# ବୀଜଗଣିତର କଉତୁକ




ଶ୍ରୀ କଲ୍ୟାଣ ମହାପାତ୍ର

# ପ୍ରାକ୍ କଥନ

ସହର ବଜାରର ଲୁଗା ମାର୍କେଟ, ପରିବା ମାର୍କେଟ, ଜୋତା ମାର୍କେଟ ଆଦି ଦେଇ ଚାଲିଗଲାବେଳେ କେଉଁ ଜିନିଷ ଦେଖିବାକୁ ମନପସନ୍ଦ ହୋଇଥାଏ ତ କେଉଁଟି ମନ ପସନ୍ଦ ହୋଇ ନଥାଏ । ମାତ୍ର ଦୋକାନୀ ତା'ର ସମସ୍ତ ଦରବକୁ ଭଲ କହି ପ୍ରତ୍ୟାଶ୍ରୀ ଗରାଖର ମନ ବହଲାଇ ଥାଏ । ତେଣୁ କଥିତ ଅଛି : ''କହି ଜାଣିଲେ କଥା ସୁନ୍ଦର ।'' କେବଳ ଛାତ୍ର କାହିଁକି, ସର୍ବସାଧାରଣରେ ଏକ ଲଘୁ ମନ୍ତବ୍ୟ ଶୁଣାଯାଏ, ''ଗଣିତ ଏକ ନିରସ ଶୁଷ୍କ ପାଠ'' । ମାତ୍ର ଏଭଳି ଟିପ୍ପଣୀ ବାସ୍ତବତା ଉପରେ ପର୍ଯ୍ୟବେଶିତ ନୁହେଁ । ଗଣିତ ନିରସ ହୋଇଥିଲେ ଗଣିତ ପରୀକ୍ଷାରେ, ପିଲା ଶହେରୁ ଶହେ ନମ୍ବର ରଖୁ ନଥାନ୍ତେ । ଅଥବା ଗଣିତ ଭିନ୍ନ ଅନ୍ୟାନ୍ୟ ତଥାକଥିତ ରସାଳ ବିଷୟରେ ପିଲା ଫେଲ୍ ହେଉ ନ ଥାନ୍ତେ । ଗଣିତକୁ ଠିକ୍ ପରିବେଷଣ କରାଯାଇ ପାରିଲେ ଏହା ଫତୁରାନନ୍ଦଙ୍କ ଲେଖା ଭଳି ମନମତାଣିଆ ହୋଇପାରିବ ।

# ବୀଜଗଣିତର କଉତୁକ

*ଲେଖକ :*

**ଶ୍ରୀ କଲ୍ୟାଣ ମହାପାତ୍ର**

*ପ୍ରକାଶକ :*

**ନବଯୁଗ ଗ୍ରନ୍ଥାଳୟ**

ବଜ୍ରକବାଟି ରୋଡ

କଟକ - ୭୫୩୦୦୧

*ଅକ୍ଷର ସଜ୍ଜା :*

**ଷ୍ଟୁଟ୍‌ନିକ୍**

ଶକ୍ତିନଗର, କଟକ - ୭୫୩୦୧୨

*ମୁଦ୍ରଣ :*

**ଟେକ୍‌ନୋଆର୍ଟସ ଅଫସେଟ**

କଲ୍ୟାଣୀ ନଗର, କଟକ - ୭୫୩୦୧୩

*ପ୍ରଥମ ଓଡ଼ିଆ ସଂସ୍କରଣ :* **୨୦୦୧**

*ମୂଲ୍ୟ :* **୩୦ ଟଙ୍କା ମାତ୍ର**

BIJAGANITARA KAUTUKA

*Author :*

*Sri Kalyan Mohapatra*

*Publisher :*

**NABAJUGA GRANTHALAYA**

Bajrakabati Road,

Cuttack - 753001

*First Oriya Edition :* **2001**

*Price :* **Rs. 30.00** Only

''ଅଙ୍କ କଉତୁକ'' ନାମରେ ପ୍ରକାଶିତ ସୁଖପାଠ୍ୟ ପୁସ୍ତକଟି ଛାତ୍ର ତଥା ଶିକ୍ଷିତ ଜନସାଧାରଣଙ୍କ ମନରେ ବହୁ ଆନନ୍ଦ ସଞ୍ଚାର କରିଅଛି । ମାତ୍ର ବୀଜଗଣିତ ଉପରେ ଆଧାରିତ ସେପରି କୌଣସି ବହି ଓଡ଼ିଆ ସାହିତ୍ୟରେ ଏଯାଏଁ ପ୍ରକାଶିତ ହୋଇନାହିଁ । ଏହି ଅଭାବଟି ପୂରଣ କରିବା ପାଇଁ ଏହି ପୁସ୍ତକରେ ପ୍ରଚେଷ୍ଟା କରାଯାଇଅଛି । ବୀଜଗଣିତ ଜାଣି ନଥିବା ପାଠକମାନଙ୍କ ପାଇଁ ଏହା ସହଜ ବୋଧ ନ ହୋଇ ପାରେ । ମାତ୍ର ବୀଜଗଣିତରେ ସାମାନ୍ୟ ପ୍ରବେଶ ଥିବା ପାଠକ ଏହି ପୁସ୍ତକ ପଢ଼ି ବେଶ୍ ଆନନ୍ଦ ପାଇପାରିବେ ବୋଲି ଆଶା କରାଯାଏ । ଏହାକୁ ପଢ଼ିଲାମାତ୍ରେ ପାଠକର ମନରେ ବୀଜଗଣିତ ପ୍ରତି ରହିଥିବା ଖାପଛଡ଼ା ଧାରଣା ଏକ ବାସ୍ତବ ରୂପ ନେବ ଓ ମନରେ ବହୁତ କୌତୁହଳ ସୃଷ୍ଟି କରିବ । ପୁସ୍ତକଟି ପାଠକମାନଙ୍କ ଦ୍ୱାରା ଆଦୃତ ହେଲେ ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

ପାଟୀଗଣିତ ବା ସାଧାରଣ ଗଣିତରେ ଗଣନ ସଂଖ୍ୟା ଓ ହର, ଗୁଣ, ଫେଡ଼, ମିଶା ଆଦି କେତୋଟି ଗାଣିତିକ ସଙ୍କେତ ବ୍ୟବହୃତ ହୁଏ । ଏହାଛଡ଼ା ସାହିତ୍ୟଭଳି ଭାଷାର କିଛି ବର୍ଣ୍ଣନା ଥାଏ । ମାତ୍ର ବୀଜଗଣିତରେ ଅଧିକରୁ ଅଧିକ ଗାଣିତିକ ସଙ୍କେତ ବ୍ୟବହୃତ ହୁଏ ସତ, କିନ୍ତୁ ଭାଷାର ବ୍ୟବହାର କ୍ରମେ ସୀମିତ ହୋଇ ଆସେ । ଅଧକରୁ ଅଧିକତର ଗାଣିତିକ ସଙ୍କେତ ବ୍ୟବହାର ଦ୍ୱାରା ବୀଜଗଣିତ ସରଳତର ଓ ବୋଧଗମ୍ୟ ହୋଇଥାଏ ।

ଓଡିଆ ସଂଖ୍ୟା ତୁଳନାରେ ଇଂରାଜୀ ସଂଖ୍ୟାର ବ୍ୟବହାର ଅଧିକ ସୁଖପାଠ୍ୟ ହେବ ବୋଲି ବହୁ ଗଣିତଜ୍ଞ ବନ୍ଧୁମାନଙ୍କର ପରାମର୍ଶ ମିଳିଲା । ତେଣୁ ଏହି ପୁସ୍ତକରେ ଭାଷା ଓ ବର୍ଣ୍ଣନା ଓଡ଼ିଆ ହୋଇଥିଲେ ହେଁ ଇଂରାଜୀ ସଂଖ୍ୟାମାଳା ବ୍ୟବହୃତ ହୋଇଅଛି ।

1, 2, 3, 4 . . . . . ଆଦି ଗୋଟିଏ ଗୋଟିଏ ସଙ୍କେତ । ତେବେ ଗଣନ ସଂଖ୍ୟା ଛଡ଼ା ପାଟୀ ଗଣିତରେ +, -, x, ÷ ଏବଂ = ଚିହ୍ନ ଯଥାକ୍ରମେ ଯୋଗ, ବିୟୋଗ, ଗୁଣନ, ହରଣ ଓ ସମାନ ଚିହ୍ନର ସଙ୍କେତ ବହନ କରିଥାଏ । ବୀଜଗଣିତରେ ଚିହ୍ନର ବ୍ୟାପକତା ଓ ବ୍ୟବହାରର ବିସ୍ତୃତି ବହୁତ କିଛି, ଯଥା :-

= ସମାନ ≠ ଅସମାନ

> ବୃହତ୍ତର ≯ ବୃହତ୍ତର ନୁହେଁ

< କ୍ଷୁଦ୍ରତର ≮ କ୍ଷୁଦ୍ରତର ନୁହେଁ

– ବିୟୋଗ ~ ଅନ୍ତର

= ସମାନ ≈ ପ୍ରାୟ ସମାନ

$2^2$ ଦୁଇର ବର୍ଗ, $2^3$ ଦୁଇର ଘନ, $2^4$ ଦୁଇର ଚାରି ଘାତାଙ୍କ $\sqrt{\ }$ ବା $\sqrt[2]{\ }$ ବର୍ଗମୂଳ $\sqrt[3]{\ }$ ଘନମୂଳ

∴ ଅତଏବ, ∵ ଯେହେତୁ ( ) ଚନ୍ଦ୍ର ବନ୍ଧନୀ, { } କୁଟୀଳ ବନ୍ଧନୀ, [ ] ବର୍ଗବନ୍ଧନୀ, ⇒ ସମାନ ବା ସୂଚିତ କରେ ।

# ଉତ୍ସର୍ଗ

ଅଗଣିତ କୁନି କୁନି ଗଣିତ ପ୍ରେମୀ

ଛାତ୍ରଛାତ୍ରୀଙ୍କ ଉଦ୍ଦେଶ୍ୟରେ

ଏଇ ପୁସ୍ତକଟି ଉତ୍ସର୍ଗ

କରୁଅଛୁ ।

- ପ୍ରକାଶକ -

# ସୂଚୀପତ୍ର

**ବିଷୟ** **ପୃଷ୍ଠା**

## ପ୍ରଥମ ଅଧ୍ୟାୟ

*ଗଣନ ସଂଖ୍ୟା ଓ ପୂର୍ଣ୍ଣ ସଂଖ୍ୟା*



## ଦ୍ୱିତୀୟ ଅଧ୍ୟାୟ

*ରାଶି, ଅଙ୍କ ଓ ସଂଖ୍ୟା*



## ତୃତୀୟ ଅଧ୍ୟାୟ

*ଗାଣିତିକ ରାଶିଦ୍ୱାରା ସଂଖ୍ୟାର ବିଭାଜ୍ୟତା ସମ୍ଭାବନା ନିର୍ଣ୍ଣୟ*

## ଚତୁର୍ଥ ଅଧ୍ୟାୟ

*ସଂଖ୍ୟାର ଅବିଭାଜ୍ୟ ଖେଳ*



## ପଞ୍ଚମ ଅଧ୍ୟାୟ

*ଗଣିତର ପଞ୍ଚମ ପ୍ରୟୋଗ*

## ଷଷ୍ଠ ଅଧ୍ୟାୟ

### ବୀଜଗଣିତର ଭାଷା

# ପ୍ରଥମ ଅଧ୍ୟାୟ

## ଗଣନ ସଂଖ୍ୟା ଓ ପୂର୍ଣ୍ଣସଂଖ୍ୟା

**୧. ଗଣନ ସଂଖ୍ୟା**

ପାଟୀଗଣିତ ବା ସାଧାରଣ ଗଣିତରେ କେବଳ ଗଣନସଂଖ୍ୟା ବ୍ୟବହାର କରାଯାଏ, ଯଥା:- 1, 2, 3, 4 . . . . . ଇତ୍ୟାଦି । ହର, ଗୁଣ, ଫେଡ଼, ମିଶା ଏହି ଚାରିସୂତ୍ର ନେଇ ଅଙ୍କ କଷା ଯାଇଥାଏ । ମାତ୍ର ଏହି ଗଣିତ ଯେତେବେଳେ ଜଟିଳ ହୋଇଯାଏ, ସେତେବେଳେ ଏହାର ସମାଧାନ ପାଇଁ ଆମେ ବୀଜଗଣିତର ସାହାଯ୍ୟ ନେଇଥାଉ । ତେଣୁ ବୀଜଗଣିତକୁ **ଜଟିଳ ଗଣିତ ସମାଧାନର ଏକ ଉପକରଣ** ବୋଲି କୁହାଯାଇଥାଏ ।

**୨. ପୂର୍ଣ୍ଣସଂଖ୍ୟା**

ଗଣନ ସଂଖ୍ୟା ମାନ ପୂର୍ଣ୍ଣସଂଖ୍ୟା ଅଟେ । ଏହାଛଡ଼ା ବୀଜଗଣିତରେ ଆମେ ଆଉ ଏକ ପ୍ରକାର ପୂର୍ଣ୍ଣସଂଖ୍ୟା ଦେଖିଥାଉ, ଯଥା :- -1, -2, -3, -4,..... ଇତ୍ୟାଦି ଏଗୁଡ଼ିକ ଗଣନସଂଖ୍ୟା ଭଳି କିଛିଟା ପ୍ରତୀୟମାନ ହେଉଥିଲେ ହେଁ କାର୍ଯ୍ୟତଃ ଗଣନସଂଖ୍ୟା ନୁହେଁ । କାରଣ ଏଗୁଡ଼ିକ ଋଣାତ୍ମକ । ସଂକ୍ଷେପରେ କହିଲେ ପୂର୍ଣ୍ଣସଂଖ୍ୟା ତିନିପ୍ରକାର, ଯଥା :-ଧନାତ୍ମକ ପୂର୍ଣ୍ଣସଂଖ୍ୟା

(ଗଣନ ସଂଖ୍ୟା), ଶୂନ୍ୟ ଏବଂ ଋଣାତ୍ମକ ଗଣନ ସଂଖ୍ୟା । ନିମ୍ନୋକ୍ତ ଚିତ୍ରରୁ ଏହା ଅଧିକ ସ୍ପଷ୍ଟ ହେବ ।




ଏହି ଚିତ୍ର ଦେଖି ପାଠକଙ୍କ ମନରେ ପ୍ରଶ୍ନ ଉଙ୍କି ମାରିବଣି । ମଝିରେ ଥିବା '0'ଟି କଅଣ । ତାହା ହେଉଛି ଶୂନ୍ । ଏହା ଏକ ଗଣନ ସଂଖ୍ୟା ନୁହେଁ । ତେବେ ଗଣନ ସଂଖ୍ୟା ହୋଇ ନଥିଲେ ବି ଏହା 1, 2, 3, 4 ଭଳି ଏକ ସଂଖ୍ୟା ଏବଂ ଏକ ପୂର୍ଣ୍ଣ ସଂଖ୍ୟା । 10, 100, 1000 ଆଦି ଲେଖିବା, ଏହା ଦ୍ୱାରା ଗୁଣନ, ହରଣ ଆଦି କରିବା; ଅନେକ କ୍ଷେତ୍ରରେ ଶୂନ୍ ସଂଖ୍ୟାଟି ଆମକୁ ବିଶେଷ ସହାୟତା କରିଥାଏ ।

### ୩. ପରିମେୟ ସଂଖ୍ୟା

ସଂଖ୍ୟା ଲେଖିଲାବେଳେ $\frac{1}{2}$, $\frac{3}{5}$, $\frac{11}{3}$ ଭଳି ସାଧାରଣ ଭଗ୍ନାଂଶ ସଂସ୍ପର୍ଶରେ ଆମେ ଆସୁ । ଏଗୁଡ଼ିକୁ କୁହାଯାଏ ପରିମେୟ ସଂଖ୍ୟା । ଗଣନ ସଂଖ୍ୟା ନହେଲେ ବି ଏହି ସଂଖ୍ୟାଗୁଡ଼ିକର ନିର୍ଦ୍ଦିଷ୍ଟ ମୂଲ୍ୟ ଥାଏ ।

### ୪. ଅପରିମେୟ ସଂଖ୍ୟା

ଆମେ ଏକ ପ୍ରକାର ସଂଖ୍ୟା ସଂସ୍ପର୍ଶରେ ଆସୁ । ତାହା ହେଉଛି $\sqrt{2}$, $\sqrt{3}$, $\sqrt{4}$, $\sqrt{12}$, $\pi$ ଇତ୍ୟାଦି । ଏହି ଯେଉଁ ସଂଖ୍ୟା ପାଞ୍ଚଟି ମାତ୍ରର ଉଦାହରଣ ଦେଲି, ସେଥିମଧ୍ୟରୁ $\sqrt{4}$ ହେଉଛି ଏକ ଗଣନ ସଂଖ୍ୟା 2 । ତେଣୁ ଏହାକୁ ବାଦ୍ ଦେବା । ଅନ୍ୟଗୁଡ଼ିକର ମୂଲ୍ୟର କଅଣ ଆବଶ୍ୟକତା ଅଛି ବୁଝିବା ।




ଗୋଟିଏ ସମକୋଣୀ ସମଦ୍ୱିବାହୁ ତ୍ରିଭୁଜର ପ୍ରତ୍ୟେକ ସମାନବାହୁ 1 ସେଣ୍ଟିମିଟର ହେଲେ, ତାହାର କର୍ଣ୍ଣର ଦୈର୍ଘ୍ୟ = $\sqrt{2}$ ସେଣ୍ଟିମିଟର । ତ୍ରିଭୁଜଟି ଅଙ୍କନ କରି $\sqrt{2}$ ର ନିର୍ଦ୍ଦିଷ୍ଟ ମୂଲ୍ୟ ଆମେ ପାଇପାରିବା । ମାତ୍ର ର ଦଶମିକ ମୂଲ୍ୟ ହିସାବ କଲେ ତାହା ହେବ :

$\sqrt{2}$ = 1.414 . . . . . .




ସେଇଭଳି ଗୋଟିଏ ବୃତ୍ତର ବ୍ୟାସ AB = 1 ସେଣ୍ଟିମିଟର ହେଲେ, ଏହାର ପରିଧିର ଦୈର୍ଘ୍ୟ $\pi$ ସେଣ୍ଟିମିଟର । ଏହାର ଦଶମିକ ମୂଲ୍ୟ ବି $\sqrt{2}$ ଭଳି ଅଚ୍ଛିଣ୍ଡା । $\sqrt{2}$, $\sqrt{3}$, $\pi$ ଭଳି ସଂଖ୍ୟାଗୁଡ଼ିକୁ ଆମେ ଅପରିମେୟ ସଂଖ୍ୟା କହିଥାଉ । ତାହାହେଲେ, ଆମେମାନେ ନିମ୍ନୋକ୍ତ ସଂଖ୍ୟାମାନ ପାଇଲୁ ।

୧. *ଗଣନ ସଂଖ୍ୟା* :- 1, 2, 3, 4, 5, 6, 7, 8, 9, 10, 11, 12 . . . ଇତ୍ୟାଦି । ଏହି ଗଣନ ସଂଖ୍ୟା ମଧ୍ୟରେ ସର୍ବକନିଷ୍ଠ ସଂଖ୍ୟା 1 ଅଟେ ।

୨. *ପୂର୍ଣ୍ଣସଂଖ୍ୟା* :- ଗଣନସଂଖ୍ୟା ଓ -1, -2, -3, -4, -5, -6, -7, -8, -9, -10, -11. . . . ଇତ୍ୟାଦି ଋଣାତ୍ମକ ପୂର୍ଣ୍ଣସଂଖ୍ୟାରେ ସବୁଠାରୁ ବଡ଼ ସଂଖ୍ୟାଟି -1 ଅଟେ ।

୩. *ଶୂନ* :- 0

୪. *ପରିମେୟ ସଂଖ୍ୟା* - $\sqrt{2}$, $\sqrt{3}$, $\sqrt{5}$, $\sqrt{6}$, $\pi$ ଇତ୍ୟାଦି ।

ଅବାସ୍ତବ, କାଳ୍ପନିକ ସଂଖ୍ୟାମାନଙ୍କ ବିଷୟରେ ଏଠାରେ ଅବତାରଣା କରାଯାଉନାହିଁ ।

1 + 1 = 2

ଆମେ ଜାଣୁ ଯେ 2 + 1 = 3 , 3 + 1 = 4 . . . . .

ଅର୍ଥାତ୍ ଗୋଟିଏ ଗଣନ ସଂଖ୍ୟାରେ 1 ଯୋଗକଲେ ପରବର୍ତ୍ତୀ ଗଣନ ସଂଖ୍ୟା ମିଳିଥାଏ, ସେଇଭଳି 1ଭିନ୍ନ ଅନ୍ୟ କୌଣସି ଗଣନ ସଂଖ୍ୟାରୁ 1 ବିୟୋଗ କଲେ ପୂର୍ବବର୍ତ୍ତୀ ଗଣନ ସଂଖ୍ୟା ମିଳିଥାଏ, ଯଥା :- 10 - 1 =9, 8 - 1 = 7, 2 - 1 = 1

**୫. ଶୂନ୍ୟର ଖେଳ**

ଯୋଗ : 2 + 0 = 2, 11 + 0 = 11, 99 + 0 = 99

ବିୟୋଗ : 2 - 0 = 2, 15 - 0 = 15, 100 - 0 = 100

କୌଣସି ସଂଖ୍ୟାରେ ଶୂନ୍ ଯୋଗକଲେ ବା ସଂଖ୍ୟାରୁ ଶୂନ୍ ବିୟୋଗ କଲେ ସଂଖ୍ୟାର ମୂଲ୍ୟରେ କୌଣସି ପରିବର୍ତ୍ତନ ହେଉନାହିଁ । ତେବେ ଶୂନ୍ ଅଛି କାହିଁକି ? ଆସ, ଆଗକୁ ମାଡି ଚାଲିବା ।

ଗୁଣନ : 3 x 0 = 0, 21 x 0 = 0, 175 x 0 = 0

ଶୂନ୍‌ଟିର କିଛି ମୂଲ୍ୟ ନାହିଁ, ଏହା ଶୂନ୍ । ଯେ କୌଣସି ସଂଖ୍ୟାକୁ ଶୂନ୍ ଦ୍ୱାରା ଗୁଣନ କଲେ ଗୁଣଫଳ ବି ଶୂନ୍ ।

ହରଣ : 1 ÷ 0 = ∞, 25 ÷ 0 = ∞, 4321 ÷ 0 = ∞

∞ ଏହା ଏକ ଅସୀମ ବା ବିରାଟ ରାଶିର ସଙ୍କେତ । ଏହା କେତେ ବଡ଼ ଯେ ମିଶା ଓ ଫେଡ଼ାଣରେ ଶୂନ୍ ନିଷ୍କ୍ରିୟ ଥିଲାବେଳେ, ଗୁଣନ ଓ ହରଣରେ ବେଶ୍ ସକ୍ରିୟ ଅଛି । ଶୂନ୍‌ରେ ଗୁଣିଲେ ରସାତଳ ଓ ଶୂନ ଦ୍ୱାରା ହରିଲେ ଅସୀମ ମହାକାଶ ଦୂରତ୍ୱ ଭଳି ମନେହୁଏ ।

ଦଶମିକ ଗୁଣନ, ହରଣ ତଥା ଘାତାଙ୍କ ସମ୍ବନ୍ଧୀୟ ବୀଜଗଣିତରେ ଶୂନ୍‌ର ଭୂମିକା ଅତୁଳନୀୟ ଓ ମନୋରମ । ପରବର୍ତ୍ତୀ ଅଧ୍ୟାୟ ଗୁଡ଼ିକରେ ଶୂନ୍‌ର କଉତୁକ କିଭଳି ଅତି ମଜାଳିଆ ହେବ, ଆମେ ଦେଖିବା ।



# ଦ୍ୱିତୀୟ ଅଧ୍ୟାୟ

## ରାଶି, ଅଙ୍କ ଓ ସଂଖ୍ୟା

ଯଦି ଗଣନ ସଂଖ୍ୟା ଆମେ ଗଣିବା ଏକ, ଦଶ, ଶହ, ହଜାର, ଲକ୍ଷ, କୋଟି, ପରାର୍ଦ୍ଧ, ଏଭଳି ଅସୀମ ସଂଖ୍ୟକ ସଂଖ୍ୟାର ମହାସାଗରରେ ଆମେ ବୁଡିଯିବା । ପୁନଶ୍ଚ ଋଣାତ୍ମକ ପୂର୍ଣ୍ଣସଂଖ୍ୟା -1, -2, -3, . . . . ସେ ଦୁନିଆ ବି ଅସରନ୍ତି । ତା' ସାଙ୍ଗକୁ ଅଛି ଭଗ୍ନାଂଶ ବା ପରିମେୟ ସଂଖ୍ୟା ଓ ବର୍ଗମୂଳ, $\pi$ ଆଦି ଅଛିଣ୍ଡା ଦଶମିକ ଭଗ୍ନାଂଶ ସଂଖ୍ୟା । ଆବୃତ ଦଶମିକ, ଋଣାତ୍ମକ ବର୍ଗମୂଳ ସଂଖ୍ୟା ଆଜି ଏଠାରେ ସୂଚିତ ହୋଇ ନାହିଁ ।

ଏହି ସଂଖ୍ୟାମାଳା ମଧ୍ୟରେ ରାଶି ଓ ଅଙ୍କ କଅଣ ?

### ୬. ରାଶି

...-4, -3, -2, -1, 0, 1, 2, 3, 4, 5, 6, 7, 8, 9, ...

ଗଣନ ସଂଖ୍ୟା ମଧ୍ୟରେ ଏକ ଅଙ୍କ ବିଶିଷ୍ଟ ସଂଖ୍ୟା ଗୁଡିକୁ ରାଶି କୁହାଯାଏ । ଅର୍ଥାତ 1 ଠାରୁ 9 ପର୍ଯ୍ୟନ୍ତ ସଂଖ୍ୟାଗୁଡ଼ିକ ରାଶି । ଏହି ନଅଟିକୁ ସଂଖ୍ୟା କହିଲେ ଠିକ୍ ହେବ ଏବଂ ରାଶି କହିଲେ ବି ଠିକ୍ ହେବ । ଅନ୍ୟ କୌଣସି ସଂଖ୍ୟା ରାଶି ନୁହେଁ ।

୭. ଅଙ୍କ

ଉପରୋକ୍ତ ବାକ୍ୟଗୁଡ଼ିକର କେଉଁଠି ଗୋଟାଏ ଅଙ୍କ ବୋଲି ଲେଖି ଦେଇଛି । ଏହି ଅଙ୍କମାନେ ଗଣିତ ନୁହେଁ । ଏହାର ଅର୍ଥ ନିମ୍ନୋକ୍ତ ଚିତ୍ରରୁ ଜଣାପଡ଼େ ।

354 ଏକ ସଂଖ୍ୟା ଅଟେ । ଏଥିରୁ ଯଦି ପଚରାଯାଏ 3ର ମୂଲ୍ୟ କଅଣ ତୁମେ କହିବ ତିନିଶହ; ସେଇଭଳି 5ର ମୂଲ୍ୟ ପଚାଶ ଏବଂ 4ର ମୂଲ୍ୟ ତୁଛା ଚାରି ।

| ଶତକ ଅଙ୍କ | ଦଶକ ଅଙ୍କ | ଏକକ ଅଙ୍କ |
|---|---|---|
| 3 | 5 | 4 |

ସେଇଭଳି 72146 ସଂଖ୍ୟାର ପାଞ୍ଚଟି ଯାକ ଅଙ୍କ, ଯଥା - 7, 2, 1, 4, 6 ର ମୂଲ୍ୟ ବୁଝିବା ।

| ଅୟୁତ ଅଙ୍କ | ସହସ୍ର ଅଙ୍କ | ଶତକ ଅଙ୍କ | ଦଶକ ଅଙ୍କ | ଏକକ ଅଙ୍କ |
|---|---|---|---|---|
| 7 | 2 | 1 | 4 | 6 |

୮. ସଂଖ୍ୟା

ତାହାହେଲେ 10, 17, 14 ଆଦି ହେଉଛି ପ୍ରତ୍ୟେକ ଦୁଇଅଙ୍କ ବିଶିଷ୍ଟ ସଂଖ୍ୟା; 354, 536, 777 ଆଦି ତିନି ଅଙ୍କ ବିଶିଷ୍ଟ ସଂଖ୍ୟା; 1000, 1234, 9999 ଆଦି ଚାରି ଅଙ୍କ ବିଶିଷ୍ଟ ସଂଖ୍ୟା; 72146 ପାଞ୍ଚଅଙ୍କ ବିଶିଷ୍ଟ ସଂଖ୍ୟା ଅଟେ । ଅର୍ଥାତ୍ ଗୋଟିଏ ସଂଖ୍ୟାରେ ଯେତିକି ରାଶି ଥାଏ, ପ୍ରତ୍ୟେକ ଗୋଟିଏ ଗୋଟିଏ ଅଙ୍କ । 72146 ରେ 7 ଗୋଟିଏ ଅଙ୍କ, 2 ଗୋଟିଏ ଅଙ୍କ, 1 ଗୋଟିଏ ଅଙ୍କ ଇତ୍ୟାଦି । ଯଦି ଆମେ ଖାଲି 9 ଲେଖି ପଚାରିବା

ଏହା ଅଙ୍କ, ନା ସଂଖ୍ୟା ନା ରାଶି ?

ଉତ୍ତର ହେବ : (a) 1, 2, 3, 4, . . . . ଗଣନ ସଂଖ୍ୟାମାଳାରେ 9 ହେଉଛି ଏକ ସଂଖ୍ୟା ।

(b) 1 ଠାରୁ 9 ଭିତରେ ଥିବା ନଅଟି ରାଶି ମଧ୍ୟରୁ ଏହା ଗୋଟିଏ ହୋଇଥିବାରୁ, ଏହା ଗୋଟିଏ ରାଶି ।

ଏବଂ (c) 9 ଗୋଟିଏ ଏକ ଅଙ୍କ ବିଶିଷ୍ଟ ସଂଖ୍ୟା ଅଟେ । ଅର୍ଥାତ୍ 9 ନାମକ ସଂଖ୍ୟାରେ 9 ଏକକ ଘର ଅଙ୍କ ଅଟେ ।

-❖-

# ତୃତୀୟ ଅଧ୍ୟାୟ

## ଗାଣିତିକ ରାଶିଦ୍ୱାରା ସଂଖ୍ୟାର ବିଭାଜ୍ୟତାର ସମ୍ଭାବନା ନିର୍ଣ୍ଣୟ

### ୯. ଯୋଗ, ବିୟୋଗ, ଗୁଣନ, ଭାଗ :

ପୂର୍ବ ଅଧ୍ୟାୟରେ କୁହାଯାଇଛି ଯେ 1 ଠାରୁ 9 ଗଣନ ସଂଖ୍ୟାକୁ ବି ରାଶି କୁହାଯାଏ । ମିଶାଣ, ଫେଡ଼ାଣ, ଗୁଣନ ଓ ହରଣରେ ଏକାଧିକ ସଂଖ୍ୟାର ବ୍ୟବହାର ବେଳେ ଏହି ନବରାଶିର ସାହାଯ୍ୟ ନେବାକୁ ପଡ଼େ । ସଂଖ୍ୟା ବଡ଼ ହୋଇଥିଲେ ରାଶିର ସାହାଯ୍ୟ ଅପରିହାର୍ଯ୍ୟ ହୋଇପଡ଼େ, ଯଥା :-

ମିଶାଣ : 347 — 9 ଓ 7, 16 ରୁ 6 ରଖି ନେଲା 1
(+)259 — ରାଶିର ପ୍ରୟୋଗ ଦେଖ ।

ଫେଡାଣ : 347 — 7 ରୁ 9 ଯାଇ ପାରିବନି । ଆଣିଲା 1 ଦଶ ।
(-)259 — ଏକଦଶ ସାତ 17 ରୁ 9 ଗଲା, ପଡ଼ିଲା ଆଠ ।

ଗୁଣନ : 347 — 9 ସତା 63 ରୁ 3 ରଖି ନେଲା ଛଅ ।
x 259 — ଏଠାରେ ବି ରାଶିର ପ୍ରୟୋଗ ଦେଖ ।

ହରଣ :ହରଣଟି କଲାବେଳେ ଆମେ ପୂର୍ବରୁ ଦେଖିନେବା ଯେ ବଡ଼ଟି ଭାଜ୍ୟ ଓ ଏହା ଭାଜକ ଦ୍ୱାରା ବିଭାଜ୍ୟ କି ନୁହେଁ । ଭାଗଫଳ ଯଦି ଗଣନ ସଂଖ୍ୟା ହେଲା ତେବେ ଭାଜ୍ୟଟି ବିଭାଜ୍ୟ । ଯଥା :- 347 ଗୋଟିଏ ସଂଖ୍ୟା ଯେକି 3 ଦ୍ୱାରା, 5 ଦ୍ୱାରା କି 7 ଦ୍ୱାରା ବିଭାଜ୍ୟ କି ନୁହେଁ ଏହା ହଠାତ୍ ଆମେ କହି ପାରୁନା ହିଁ ନିମ୍ନୋକ୍ତ ସୂତ୍ରମାନ ଆମକୁ ଏଥିରେ ସାହାଯ୍ୟ କରିବ ।

## ୧୦. ଏକଠାରୁ ଛଅ ଦ୍ୱାରା ବିଭାଜ୍ୟତା

ଏକ ବିଭାଜ୍ୟତା : ସମସ୍ତ ସଂଖ୍ୟା 1 ରାଶି ଦ୍ୱାରା ବିଭାଜ୍ୟ, ଯଥା :- 22, 33, 55, 77 ।

ଦୁଇ ବିଭାଜ୍ୟତା : ଯେଉଁ ସଂଖ୍ୟାର ଏକକ ଘର ଅଙ୍କ 2, 4, 6, 8 ବା 0 ହୋଇଥାଏ, ଉକ୍ତ ସଂଖ୍ୟା 2 ଦ୍ୱାରା ବିଭାଜ୍ୟ, ଯଥା :- 122, 3754, 2316, 13578 ଏବଂ 10000 ।

ତିନି ବିଭାଜ୍ୟତା : ଯେଉଁ ସଂଖ୍ୟାର ରାଶିମାନଙ୍କର ଯୋଗଫଳ ଯେଉଁ ସଂଖ୍ୟା ସୂଚିତ କରେ, ତାହା 3 ଦ୍ୱାରା ବିଭାଜ୍ୟ ହେଲେ, ମୂଳ ସଂଖ୍ୟାଟି 3 ଦ୍ୱାରା ବିଭାଜ୍ୟ । ମନେକର ସଂଖ୍ୟାଟି 73542 ରାଶିମାନଙ୍କର ଯୋଗଫଳ 7+3+5+4+2 = 21 ଅଟେ । 21 ସଂଖ୍ୟାଟି 3 ଦ୍ୱାରା ବିଭାଜ୍ୟ ହେଉଥିବାରୁ 73542 ମଧ୍ୟ 3 ଦ୍ୱାରା ବିଭାଜ୍ୟ ଅଟେ ।

ଚାରି ବିଭାଜ୍ୟତା : ଯେଉଁ ସଂଖ୍ୟାର ଶେଷ ଦୁଇଟି ଅଙ୍କ ଶୂନ ହୋଇଥାଏ ବା ଶେଷ ଦୁଇଅଙ୍କ ସୂଚିତ ସଂଖ୍ୟା 4 ଦ୍ୱାରା ବିଭାଜ୍ୟ ଅଟେ ।

ଯଥା :- 300, 2000, 284, 1772, 1916 ଇତ୍ୟାଦି । ଏଠାରେ 84, 72, 16 ଆଦି 4 ଦ୍ୱାରା ବିଭାଜ୍ୟ ଅଟେ ଓ ତେଣୁ 284, 1772, 1916 ବି 4 ଦ୍ୱାରା ବିଭାଜ୍ୟ ଅଟେ । ସଖ୍ୟାର ଶେଷ ଦୁଇଅଙ୍କ 00 ହୋଇଥିବାରୁ 300 ଓ 2000 ମଧ୍ୟ ଚାରି ଦ୍ୱାରା ବିଭାଜ୍ୟ ।

ପାଞ୍ଚ ବିଭାଜ୍ୟତା : ଗୋଟିଏ ସଂଖ୍ୟାରେ ଏକକ ଘରେ 0 ବା 5 ଥିଲେ ସଂଖ୍ୟାଟି 5 ଦ୍ୱାରା ବିଭାଜ୍ୟ ଅଟେ । ଯଥା :-25, 70,135 ଇତ୍ୟାଦି ।

ଛଅ ଦ୍ୱାରା ବିଭାଜ୍ୟତା : ଗୋଟିଏ ସଂଖ୍ୟା ଯଦି 2 ଦ୍ୱାରା ବିଭାଜ୍ୟ ଏବଂ 3 ଦ୍ୱାରା ମଧ୍ୟ ବିଭାଜ୍ୟ, ତେବେ ଉକ୍ତ ସଂଖ୍ୟାଟି ନିଶ୍ଚୟ 6 ଦ୍ୱାରା ବିଭାଜ୍ୟ ।

୧୧. ସାତ ଦ୍ୱାରା ବିଭାଜ୍ୟତା : 7 ଦ୍ୱାରା ବିଭାଜ୍ୟତା ପ୍ରଣାଳୀ ଟିକିଏ ଜଟିଳ । ମାତ୍ର ତାହା ଜାଣିବାରେ ଅପାର ଆନନ୍ଦ ମିଳିଥାଏ । ପରବର୍ତ୍ତୀ ଅଧ୍ୟାୟରେ 7 ଦ୍ୱାରା ଅବିଭାଜ୍ୟତା କଉତୁକ ଦେଖିବା । ଏବେ ବିଭାଜ୍ୟତା । ସାତ ଦ୍ୱାରା ବିଭାଜ୍ୟତା ଜାଣିବାର ପ୍ରଣାଳୀ ଦୁଇପ୍ରକାର । ତାହା ଏଇଭଳି ।

(କ) ପ୍ରଥମ ସୂତ୍ର : 9818555341 ଏକ ଦଶଅଙ୍କ ବିଶିଷ୍ଟ ସଂଖ୍ୟା ଅଟେ । ଏହାକୁ ହଠାତ୍ ଦେଖିନେଇ ଏହି ସଂଖ୍ୟାଟି 7 ଦ୍ୱାରା ବିଭାଜ୍ୟ କି ନୁହେଁ ଜାଣିବା କଷ୍ଟକର । ଏହି ବଡ଼ ସଂଖ୍ୟାଟିକୁ ନେଇ ଦକ୍ଷିଣ ପାର୍ଶ୍ୱରୁ ତିନୋଟି ଲେଖାଏଁ ଅଙ୍କ ନେଇ ଗ୍ରୁପ୍ କର । ଏହି ଗ୍ରୁପ୍ ଗୁଡ଼ିକ ଡାହାଣରୁ ଗଣିଲେ ଅଯୁଗ୍ମ ବା ଯୁଗ୍ମ, ଏଇଭଳି ଦୁଇପ୍ରକାର ଗ୍ରୁପ୍ ମିଳିବ ।

| 9 | 818 | 555 | 341 |
|---|---|---|---|
| ଯୁଗ୍ମ | ଅଯୁଗ୍ମ | ଯୁଗ୍ମ | ଅଯୁଗ୍ମ |

ଅଯୁଗ୍ମ ଗ୍ରୁପ୍‌ରେ ଥିବା ଦୁଇଟି ସଂଖ୍ୟାର ଯୋଗଫଳ :

$$818 + 341 = 1159$$

ଯୁଗ୍ମ ଗ୍ରୁପ୍‌ରେ ଥିବା ଦୁଇଟି ସଂଖ୍ୟାର ଯୋଗଫଳ :

$$9 + 555 = 564$$

ଏହି ଦୁଇଟି ନୂତନ ସଂଖ୍ୟାର ଅନ୍ତରଫଳ = 1159 - 564 = 595

ଯଦି ଏହି ନୂତନ ସଂଖ୍ୟା 595 ଟି 7 ଦ୍ୱାରା ବିଭାଜ୍ୟ ହେଉଥାଏ, ତେବେ ମୂଳ ସଂଖ୍ୟାଟି 9818555341 ମଧ୍ୟ 7 ଦ୍ୱାରା ବିଭାଜ୍ୟ ଅଟେ । ଅନ୍ୟଥା ନୁହେଁ । ହରଣ କରି ଜଣାଯାଏ ଯେ 595 ସଂଖ୍ୟା 7 ଦ୍ୱାରା ଛିଡ଼ି ଯାଉଛି । ତେବେ 9818555341 କୁ 7 ଦ୍ୱାରା ଭାଗ କରି ଦେଖନା କଅଣ ହେଉଛି ।

(ଖ) ଦ୍ୱିତୀୟ ସୂତ୍ର : ଏହି ସୂତ୍ରଟି ପରୀକ୍ଷା କରିବା ପାଇଁ ସେହି ପୂର୍ବ ସଂଖ୍ୟାଟି ନେବା । ଡାହାଣରୁ କ୍ରମାନ୍ୱୟରେ ବାମକୁ ଗତିକର ।

| ସହସ୍ର | ଶତକ | ଦଶକ | ଏକକ | ଲକ୍ଷ | ଅଯୁତ | ସହସ୍ର | ଶତକ | ଦଶକ | ଏକକ |
|---|---|---|---|---|---|---|---|---|---|
| 9 | 8 | 1 | 8 | 5 | 5 | 5 | 3 | 4 | 1 |

ସଂଖ୍ୟା 9818555341 କୁ ଉପରୋକ୍ତ ସାରଣୀରେ ସଜାଇ ରଖ । ସୂତ୍ରଟି ହେଲା :

(ଏକକ ଘର x 3 + ଦଶକ ଘର x 2 - ଶତକ ଘର x 1 - ସହସ୍ରଘର x 3 - ଅଯୁତ ଘର x 2 + ଲକ୍ଷ ଘର x 1); ଏହି ସଂଖ୍ୟାଟି 7 ଦ୍ୱାରା ବିଭାଜ୍ୟ ହେଲେ ମୂଳ ସଂଖ୍ୟାଟି 7 ଦ୍ୱାରା ବିଭାଜ୍ୟ । ମାତ୍ର ଆମ ବଡ଼ ସଂଖ୍ୟାଟି

ତ ଦଶଅଙ୍କ ବିଶିଷ୍ଟ ଅଟେ । ତେଣୁ ଉପରେ ଦର୍ଶାଯାଇଥିବା ସାରଣୀରେ ଲକ୍ଷ ଘର ପରେ କ୍ରମେ ବାମକୁ ପୁଣି ଏକକ, ଦଶକ, ଶତକ ଓ ସହସ୍ର ହିସାବରେ ମନେ କରିବା । ଏବେ ସୂତ୍ର ଅନୁଯାୟୀ ବଡ଼ସଂଖ୍ୟାଟିକୁ ସଙ୍କୁଚିତ କଲେ ହେବ :

(1x3 + 4x2 - 3x1 - 5x3 - 5x2 + 5x1) + (8x3 + 1x2 - 8x1 - 9x3)

$\Rightarrow$ (3+8-3-15-10+15) + (24+2-8-27)

$\Rightarrow$ -12 + (-9)

$\Rightarrow$ -21

ଯେହେତୁ -21 ସଂଖ୍ୟାଟି 7 ଦ୍ୱାରା ବିଭାଜ୍ୟ, ତେଣୁ 9818555341 ସଂଖ୍ୟାଟି ମଧ୍ୟ 7 ଦ୍ୱାରା ବିଭାଜ୍ୟ ଅଟେ ।

**୧୨. ଆଠ ଓ ନଅଦ୍ୱାରା ବିଭାଜ୍ୟତା**

ଆଠ ବିଭାଜ୍ୟତା : କୌଣସି ସଂଖ୍ୟାର ଶେଷ ତିନୋଟି ଯାକ ଅଙ୍କ (ଶତକ, ଦଶକ ଓ ଏକକ ଘର) ଶୂନ ହୋଇଥିଲେ ତାହା 8 ଦ୍ୱାରା ବିଭାଜ୍ୟ । ଅଥବା ଏହି ତିନିଅଙ୍କ ବିଶିଷ୍ଟ ସୂଚକ ସଂଖ୍ୟାଟି 8 ଦ୍ୱାରା ବିଭାଜ୍ୟ ହେଉଥିଲେ, ସମଗ୍ର ସଂଖ୍ୟାଟି 8 ଦ୍ୱାରା ବିଭାଜ୍ୟ ଅଟେ ଯଥା :- 3000, 50000, 1280, 4088, 71496 ଇତ୍ୟାଦି ।

ନଅ ବିଭାଜ୍ୟତା : ତିନି ବିଭାଜ୍ୟତାର ସୂତ୍ର ନଅ ପାଇଁ ବି ପ୍ରଯୁଜ୍ୟ । ଅର୍ଥାତ୍ ଗୋଟିଏ ସଂଖ୍ୟାର ସମସ୍ତ ରାଶିର ସମଷ୍ଟି 9 ଦ୍ୱାରା ବିଭାଜ୍ୟ ହେଉଥିଲେ ସମଗ୍ର ସଂଖ୍ୟାଟି 9 ଦ୍ୱାରା ବିଭାଜ୍ୟ ହେବ । ଯଥା :- 753201 ସଂଖ୍ୟାଟିର ଅଙ୍କଗୁଡ଼ିକର ସମଷ୍ଟି 18 ଅଟେ । ଏହା 9 ଦ୍ୱାରା ବିଭାଜ୍ୟ ହେତୁ, ମୂଳ ସଂଖ୍ୟାଟି ମଧ୍ୟ 9 ଦ୍ୱାରା ବିଭାଜ୍ୟ ।

1 ଠାରୁ 9 ପର୍ଯ୍ୟନ୍ତ ବିଭାଜ୍ୟ ତ ଆମେ ଜାଣିଲେ । 1 ର ପୂର୍ବରୁ ଅଛି ଶୂନ ଏବଂ 9 ପରେ ଅଛି 10 ସଂଖ୍ୟା । ଶୂନ୍ ଓ ଦଶ ଏ ଦୁଇଟି ରାଶି ନ ହେଲେ ହେଁ ଭାଜକ ହିସାବରେ ଏମାନଙ୍କର ଭୂମିକା ବହୁତ ଗୁରୁତ୍ୱପୂର୍ଣ୍ଣ ଓ ବର୍ଣ୍ଣାଢ୍ୟ ମଧ୍ୟ । ତାହା କିଛିତ ପୂର୍ବ ଅଧ୍ୟାୟରେ ଆମେ ଆଲୋଚନା କରିଛେ ଓ ପରେ ଅଧିକ ଜାଣିବା ।



# ଚତୁର୍ଥ ଅଧ୍ୟାୟ

## ସଂଖ୍ୟାର ଅବିଭାଜ୍ୟ ଖେଳ

ପୂର୍ବ ଅଧ୍ୟାୟରେ ବହୁତ ବଡ଼ ସଂଖ୍ୟାଟିଏ ବିଭିନ୍ନ ରାଶି ଦ୍ୱାରା ବିଭାଜ୍ୟ ହୋଇପାରେ କି ନାହିଁ ତାହାର ଉପାୟ, ଆମେ ଜାଣିଲେ । ମାତ୍ର ବିଭାଜ୍ୟ ନ ହୋଇ ପାରିଲେ କ'ଣ ହେବ ଜାଣିଛ କି ? ବିଭାଜ୍ୟ ହେଲେ ସାଧାରଣତଃ ଭାଗଫଳ ଏକ ପୂର୍ଣ୍ଣସଂଖ୍ୟା ବା ଗଣନ ସଂଖ୍ୟା ହୋଇଥାଏ । ମାତ୍ର ବିଭାଜ୍ୟ ନ ହୋଇ ପାରିଲେ ଭାଗଫଳ ଏକ ପରିମେୟ ସଂଖ୍ୟା ବା ସାଧାରଣ ଭଗ୍ନାଂଶଟିଏ ହେବ, ଯଥା :-

$3 \div 7 = \frac{3}{7}$,

$23 \div = 3\frac{2}{7}$,

$34 \div 5 = 6\frac{4}{5}$

ଏହି ଭଗ୍ନାଂଶରେ ଏକ ଅସୁବିଧା ଅଛି । ମନେକର ଦୁଇଟି ସଂଖ୍ୟା

$3\frac{111}{237}$ ଏବଂ $373\frac{61}{947}$; ଏହି ଦୁଇଟିକୁ ନେଇ ଯୋଗ, ବିୟୋଗ, ଗୁଣନ ଓ ହରଣ କରିବାରେ ଭାରୀ ଅସୁବିଧା । ତେଣୁ ସାଧାରଣ ଭଗ୍ନାଂଶ ପରିବର୍ତ୍ତେ ଦଶମିକ ଭଗ୍ନାଂଶ ଭାରୀ ସୁବିଧା ।

## ୧୩. ରଶିଦ୍ୱାରା ଭାଗକ୍ରିୟା ଓ ଭାଗଫଳ ନିର୍ଣ୍ଣୟ

ଭାଗକ୍ରିୟାରେ, ଭାଜକ ସଂଖ୍ୟାଟିକୁ ନେଇ ଭାଜ୍ୟ ସଂଖ୍ୟା ତିନିପ୍ରକାର ଉତ୍ତର ଦେଇପାରେ । ଭାଗଫଳଟି ପୂର୍ଣ୍ଣସଂଖ୍ୟା ହୋଇପାରେ, ହୁଏତ ଏକ ଛିଣ୍ଡା ଦଶମିକ ଭଗ୍ନାଂଶ ସଂଖ୍ୟା ହୋଇପାରେ ବା ଅଛିଣ୍ଡା ଦଶମିକ ଭଗ୍ନାଂଶ ସଂଖ୍ୟା ହୋଇପାରେ । ତାହା ଆମେ ଏବେ ପରୀକ୍ଷା କରି ଦେଖିବା । ଭାଜ୍ୟ ରୂପେ ବଡ଼ ସଂଖ୍ୟାଟିଏ ନନେଇ 1 କୁ ଭାଜ୍ୟ ନିଆଯାଉ ଏବଂ ଏହି 1 କୁ ବିଭିନ୍ନ ରାଶି ଦ୍ୱାରା ଭାଗ କରି ଭାଗଫଳ କେତେ ହେଉଛି ଦେଖିବା ।

$1 \div 1 = 1$

$1 \div 2 = 0.5$

$1 \div 3 = 0.333............ = 0.\dot{3}$

$1 \div 4 = 0.25$

$1 \div 5 = 0.2$

$1 \div 6 = 0.1666........ = 0.1\dot{6}$

$1 \div 8 = 0.125$

$1 \div 9 = 0.111.......... = 0.\dot{1}$

ଭୁଲବଶତଃ 1 କୁ 7 ଦ୍ୱାରା ଭାଗ କରିବା ଭୁଲିଯାଇଛି ନା କଅଣ । ଆଚ୍ଛା, ତାହାକୁ ପରେ ଆଲୋଚନା କରିବା । ଏବେ 1 କୁ ଉପରୋକ୍ତ ଆଠଟି

ରାଶିଦ୍ୱାରା ଭାଗକଲେ ଫଳାଫଳ କିଭଳି ହେଉଛି, ତାହାର ଏକ ଅନୁଶୀଳନ କରିବା ।

1 କାହିଁକି, ଯେ କୌଣସି ଗଣନ ସଂଖ୍ୟାକୁ 1 ଦ୍ୱାରା ଭାଗ କଲେ ଭାଗଫଳ ସେହି ଗଣନ ସଂଖ୍ୟା ହିଁ ରହିବ ।

1 କୁ 2, 4, 5, 8 ଦ୍ୱାରା ଭାଗକଲେ ଭାଗଫଳ ଛିଡ଼ିଯାଉଛି । କାରଣ ଦଶମିକ ହେଉଛି '10' ର ଖେଳ । 10 ରେ ଦୁଇଟି ଗୁଣନୀୟକ ଅଛି $\Rightarrow 10 = 2 \times 5$ ଅଟେ । ତେଣୁ କେବଳ 2 ବା 5 ଗୁଣନୀୟକ ଦେଉଥିବା ଯେକୌଣସି ସଂଖ୍ୟା, ଯଥା :- 2, 4, 5, 8, 10, 16, 20, 25, 32, 40, 50, 64 ଆଦି ଦ୍ୱାରା କୌଣସି ସଂଖ୍ୟାକୁ ଭାଗ କଲେ ସଂଖ୍ୟାଟି ଛିଡ଼ିଯାଉଥିବ । ମାତ୍ର ଭାଜକର ଗୁଣନୀୟକରେ 2 ଓ 5 ଭିନ୍ନ ଯଦି ଅନ୍ୟ କୌଣସି ରାଶି, ଯଥା :- 3, 6, 7, 9 ରହେ ତେବେ ଭାଗଫଳଟି ଅଛିଣ୍ଡା ରହିବ ।

1 କୁ 3 ଦ୍ୱାରା ଭାଗ କଲେ 0.333........ ବା $0.\dot{3}$ ରହେ ।

2 କୁ 3 ଦ୍ୱାରା ଭାଗ କଲେ 0.666........ ବା $0.\dot{6}$ ରହେ ।

1 କୁ 9 ଦ୍ୱାରା ଭାଗ କଲେ 0.111........ ବା $0.\dot{1}$ ରହେ ।

2 କୁ 9 ଦ୍ୱାରା ଭାଗ କଲେ 0.222........ ବା $0.\dot{2}$ ରହେ ।

ପିଲାମାନେ 1, 2 ପରିବର୍ତ୍ତେ ଭାଜ୍ୟରୂପେ ଅନ୍ୟସଂଖ୍ୟା ନେଇ ପରୀକ୍ଷା କରିପାରିବେ । ଏବେ ମନରେ ଉଙ୍କିମାରୁଥିବ ଯେ 1 କୁ 6 ଦ୍ୱାରା ଭାଗ କରାଗଲା, 2 କୁ 6 ଦ୍ୱାରା କାହିଁକି ଭାଗ କରିବାନି । $\frac{2}{6}=\frac{1}{3}$ ; ତେଣୁ ଅଲଗା ଭାଗ କରିବା ଅନାବଶ୍ୟକ ।

## ୧୪. ସାତଦ୍ୱାରା ଭାଗଫଳ ନିର୍ଣ୍ଣୟ

ଗୋଟିଏ ପୂର୍ଣ୍ଣସଂଖ୍ୟାକୁ 7 ଦ୍ୱାରା ଭାଗ କଲେ କଣ ହୁଏ, ଏବେ ଆମେ ତାହା ପରୀକ୍ଷା କରି ଦେଖିବା ।

$1 \div 7 = 0.142857142857142857......$

$\Rightarrow 0.\dot{1}4285\dot{7}$

$2 \div 7 = 0.285714285714285714......$

$\Rightarrow 0.\dot{2}8571\dot{4}$

$3 \div 7 = 0.428571428571428571......$

$\Rightarrow 0.\dot{4}2857\dot{1}$

$4 \div 7 = 0.571428571428571428......$

$\Rightarrow 0.\dot{5}7142\dot{8}$

$5 \div 7 = 0.714285714285714285......$

$\Rightarrow 0.\dot{7}1428\dot{5}$

$6 \div 7 = 0.857142857142857142.....$

$\Rightarrow 0.\dot{8}5714\dot{2}$

$7 \div 7 = 1$

$8 \div 7 = 1.\dot{1}4285\dot{7}$

$9 \div 7 = 1.\dot{2}8571\dot{4}$

ନଛିଡୁଥିବା ଏହି ଦଶମିକ ସଂଖ୍ୟା ଶ୍ରେଣୀକୁ ପୌନଃ ପୌନିକ ଭଗ୍ନାଂଶ କୁହାଯାଏ ।

କୌଣସି ସଂଖ୍ୟାକୁ 7 ଦ୍ୱାରା ଭାଗକଲେ ପୁନଃ ପୁନଃ ଉଭା ହେଉଥିବା ମାତ୍ର ଛଅଟି ରାଶି ଦୃଷ୍ଟିକୁ ଆସେ । କେଉଁଗୁଡ଼ିକ ଆସୁନାହିଁ, ତାହା ଲକ୍ଷ୍ୟ କର 1, 3, 6, 9 ଆଦୌ ଦୃଷ୍ଟିକୁ ଆସୁନାହିଁ । କେବଳ 2 ଓ 5 ଗୁଣନୀୟକ ବହନ

କରୁଥିବା ସଂଖ୍ୟାମାନଙ୍କୁ ଛାଡ଼ିଦେଲେ ଅନ୍ୟ ଯେ କୌଣସି ସଂଖ୍ୟା ଭାଜକ ହେଲେ ଭାଗଫଳ ଛିଡ଼ି ନଯାଇ ପୌନଃପୌନିକ ହେବ । ଆମେ ଦେଖିଲେ । ଯେକୌଣସି ସଂଖ୍ୟାନେଇ, ତାହାକୁ 11, 13, 17, 19 ଆଦି ସଂଖ୍ୟା ଦ୍ୱାରା ଭାଗ କରି ଦେଖିଲେ ବେଶ୍ ଏକ ସଂଖ୍ୟାର ଖେଳ ଜମିଯିବ । ସଂଖ୍ୟାର ଏହି ଅବିଭାଜ୍ୟ ଖେଳ ତ ଅସରନ୍ତି । ଏବେ ଆମେ ଏଇଠି ରହିବା ।



# ପଞ୍ଚମ ଅଧ୍ୟାୟ

## ଗଣିତର ପଞ୍ଚମ ପ୍ରୟୋଗ

*ଉପକ୍ରମଣିକା*

ପାଟୀଗଣିତରୁ ବୀଜଗଣିତର ପାହାଚକୁ ଆମେ ଏଯାଏ ଚଢ଼ି ଚାଲିଥିଲେ । ପାହାଚ ଚଢ଼ିବାରେ ଦୋରସ୍ତ ହୋଇନଥିଲେ ବୀଜଗଣିତରେ ପହଞ୍ଚିପାରି ନଥାନ୍ତେ । କେତେକ ବୀଜଗଣିତକୁ ପାଟୀଗଣିତର ସାତଟି ସମ୍ପାଦନ ବୋଲି କହନ୍ତି । ବାସ୍ତବରେ ଆମେ ଚାରିଟି ସମ୍ପାଦନ କରିଛୁ । ସାଧାରଣ ସଂଖ୍ୟାର ହର-ଗୁଣ-ଫେଡ-ମିଶା ତ ପାଟୀଗଣିତ । ସଂଖ୍ୟାର ଘାତାଙ୍କ ବା ସୂଚକାଙ୍କ ବିଷୟରେ ଆମେ ଚିନ୍ତା କରିଛେ କି ?

ଦୈନନ୍ଦିନ ଜୀବନରେ ଆମେ ତ ଏଇଭଳି ଅନେକ ଘାତାଙ୍କ ଜନିତ ଗଣିତ ସଂସ୍ପର୍ଶରେ ଆସିଥାଉ, ଯଥା:- କ୍ଷେତ୍ରଫଳ, ଘନଫଳ, ମାଧ୍ୟାକର୍ଷଣ-ଶକ୍ତି, ପରିବେଶ, ତ୍ୱରଣ, ବଳ, କ୍ଷମତା, ଚୁମ୍ବକୀୟ ବଳ; ଆଲୋକ ଓ ଶବ୍ଦର ଗତି; ପୃଥିବୀ, ଚନ୍ଦ୍ର ଆଦି ମହାଜାଗତିକ ବସ୍ତୁର ଆବର୍ତ୍ତନ ଓ ପରିକ୍ରମଣ;

ସେମାନଙ୍କ ପାରସ୍ପରିକ ଦୂରତାର କ୍ରମ ପରିବର୍ତ୍ତନ ଆଦି ସ୍ମରଣ କରିବାକୁ ହେବ । ଇଞ୍ଜିନିୟରିଙ୍ଗ୍ ଓ ପ୍ରଯୁକ୍ତିବିଦ୍ୟାରେ ଜଟିଳ ବୀଜଗଣିତର ସଂଖ୍ୟାରେ ଘାତାଙ୍କର ଘାତାଙ୍କ ହିସାବ କରିବାକୁ ପଡ଼ିଥାଏ । ବୀଜଗଣିତ ବିନା ଏଗୁଡ଼ିକ କଷିବା ବା କଳନା କରିବା ସମ୍ଭବପର ନୁହେଁ । ଗୋଟିଏ ସାମାନ୍ୟ ଉଦାହରଣ ଦେବା ।

ଗୋଟିଏ ଉତ୍ତପ୍ତ ବସ୍ତୁର ତାପମାତ୍ରା 2000 ଡିଗ୍ରୀ ରୁ 4000 ଡିଗ୍ରୀକୁ ବଢ଼ିଗଲା । ଆମେ କହିବା ତାପମାତ୍ରା ଦୁଇଗୁଣ ବଢ଼ିଗଲା । ମାତ୍ର ଯଦି କୁହାଯାଏ ତାପମାତ୍ରା 4000 ଗୁଣ ବଢ଼ିଗଲା; 2000 ଡିଗ୍ରୀର 4000 ଗୁଣ ? ତେବେ ଏହା ତ ବହୁତ ବଡ଼ ସଂଖ୍ୟାଟିଏ । ତେଣୁ 4000 ସଂଖ୍ୟାଟିକୁ ଘାତାଙ୍କ ଜରିଆରେ ପ୍ରକାଶ କରିବା, ଯଥା :- $4000 \approx 2^{12}$

ଅର୍ଥାତ୍ 2 କୁ 2 ଦ୍ୱାରା 12 ଥର ବା 12 ଟି 2 ପରସ୍ପରକୁ ଗୁଣିଲେ ତାହା 4000 ହେବ (ବାସ୍ତବରେ ଏହା 4096) ।

ସେଇଭଳି $2^{10} \approx 10^{3}$

ବଡ଼ ଅକ୍ଷରରେ ଲେଖାଥିବା ସଂଖ୍ୟାର ଡାହାଣରେ ଟିକିଏ ଉପରକୁ ଛୋଟ ଅକ୍ଷରରେ ଲେଖାଥିବା ସଂଖ୍ୟାଟିକୁ ଘାତାଙ୍କ ବା Power କୁହାଯାଏ ।

ଏଠାରେ ଗୋଟିଏ କଥା ପୁନଃ ସ୍ମରଣ କରିବାକୁ ହେବ । ଚିତ୍ରଟି ଦେଖ ।

. . . . . . . . -5, -4, -3, -2, -1, 0 , 1, 2, 3, 4, 5 . . . . . . . .

ଋଣାତ୍ମକ ପୂର୍ଣ୍ଣ ସଂଖ୍ୟା    ଧନାତ୍ମକପୂର୍ଣ୍ଣସଂଖ୍ୟା ବା ଗଣନସଂଖ୍ୟା

ଶୂନଟିର କିଛି ମୂଲ୍ୟ ନାହିଁ ଭାବି ଆମେ ଏଯାଏ ତାକୁ ଅବହେଳା କରି

ଆସିଥିଲେ । 1, 10, 100, 1000 ଆଦି ସଂଖ୍ୟା ମନେ ପଡୁଛି ତ ? 1 ର ଡାହାଣରେ 5 ଟି ଶୂନ୍ ଦେଲେ ଏକ ଲକ୍ଷ, 7 ଟି ଶୂନ୍ ଦେଲେ ଏକ କୋଟି, 10 ଟି ଶୂନ ଦେଲେ ଏକ ହଜାର କୋଟି । ଭାରତ ସରକାରଙ୍କର ଆଣିଥିବା ଋଣ, ସମୂଳ ସୁଧ, ବଜେଟ ଆଦି ଟିଭି ପରଦାରେ ପଢ଼ିଲାବେଳେ 'ଦଶ ହଜାର ଲକ୍ଷ କୋଟି' ପଢ଼ି ଆଖି ଝଲକା ହୋଇଯାଏ । ଇଏ ଗୋଟିଏ କେଡ଼େ ବଡ଼ ସଂଖ୍ୟା ମ ? ବିଭିନ୍ନ କ୍ଷେତ୍ରରେ ଏହି ସଂଖ୍ୟାର ଧନ୍ଦାକୁ ଆଉ ଟିକିଏ ଭଲ କରି ଚିହ୍ନିବା ।

## ୧. ମହାଜାଗତିକ ସଂଖ୍ୟା

ମହାକାଶରେ ବିଭିନ୍ନ ଜ୍ୟୋତିଷ୍କ ତଥା ନକ୍ଷେତ୍ର ମଧ୍ୟରେ ପାରସ୍ପରିକ ଦୂରତା, ଗତି, ସ୍ଥିତି, ଆଲୋକର ପରିବେଗ ଆଦି ପ୍ରକାଶ କଲାବେଳେ ଆମେ ବିରାଟ ବିରାଟ ସଂଖ୍ୟା ସଂସ୍ପର୍ଶରେ ଆସୁ, ଯଥା :- ଯଦି ଆମ ପୃଥିବୀଠାରୁ କୌଣସି ଏକ ତାରକାର ଦୂରତ୍ୱକୁ ମିଲିମିଟରରେ ପ୍ରକାଶ କରିବା ତେବେ ତାହା 95 000 000 000 000 000 000 କିଲୋମିଟର ଅଟେ । ଯଦି ଏହି ଦୂରତାକୁ ମିଲିମିଟରରେ ପ୍ରକାଶ କରିବା ତେବେ ତାହା 95 000 000 000 000 000 000 000 000 ମିଲିମିଟର ହେବ । ସେଇଭଳି ସୂର୍ଯ୍ୟର ଓଜନ, ପୃଥିବୀର ଓଜନ ଆଦି ଗ୍ରାମ ଏକକରେ ପ୍ରକାଶ କଲେ ପ୍ରକାଣ୍ଡ ସଂଖ୍ୟାମାନ ହେବ । ସୂର୍ଯ୍ୟର ଓଜନ ହେଉଛି 1983 000 000 000 000 000 000 000 000 000 000 ଗ୍ରାମ ଓଜନ । ଏଇ ଭଳି ବିରାଟକାୟ ସଂଖ୍ୟାକୁ ଲେଖିବା, ପଢ଼ିବା ବା ଭାବରେ ପ୍ରକାଶ କରିବା କେତେ ଦୂରୁହ ବ୍ୟପାର ଏବେ ଅନୁମାନ କରାଯାଇପାରେ । ଏହାକୁ ସୁଗମ କରିବା ପାଇଁ ଗାଣିତିକ ପଞ୍ଚମ ପ୍ରୟୋଗ କରିବା । ଆମେ

ଜାଣୁ ଯେ $10 = 10^1$ , $100 = 10^2$ , $1000 = 10^3$ , $100000 = 10^5$ ଇତ୍ୟାଦି । ଅର୍ଥାତ୍ 1 ର ଡାହାଣରେ ଯେତୋଟି ଶୂନ ଅଛି, 10 ସଂଖ୍ୟାଟି ଲେଖି ତାହା ଉପରେ ସେତିକି ସୂଚକ ସଂଖ୍ୟାଟି ଲେଖିଦେଲେ, ବିରାଟକାୟ ସଂଖ୍ୟାଟି ସହଜରେ ପ୍ରକାଶ କରାଯାଇପାରେ । ଯେପରି :

95 000 000 000 000 000 000 କିଲୋମିଟର ନଲେଖି $95 \times 10^{18}$ କି.ମି. ଲେଖିପାରିବା । ସେଇଭଳି ସୂର୍ଯ୍ୟର ଓଜନ 1983 000 000 000 000 000 000 000 000 000 000 ଗ୍ରାମ ଓଜନ = $1983 \times 10^{30}$ଗ୍ରାମ ଓଜନ ।

ଏପରି ଲେଖିବା ଦ୍ୱାରା କେବଳ ସ୍ଥାନ ବଞ୍ଚେନାହିଁ, ସମୟ ମଧ୍ୟ ବଞ୍ଚେ, ଅଙ୍କ କଷିବା ସହଜ ସାଧ୍ୟ ହୁଏ । ଅଙ୍କ ଲେଖିବାରେ ଭୁଲଭଟକାର ଆଶଙ୍କା ନଥାଏ । ମନେକର ଉପରୋକ୍ତ ଦୁଇଟି ସଂଖ୍ୟାର ଗୁଣଫଳ ନିର୍ଣ୍ଣୟ କରିବାକୁ କୁହାଗଲା । ଏହାର ଗୁଣଫଳ ହେବ :

$$95 \times 10^{18} \times 1983 \times 10^{30}$$

$$= 95 \times 1983 \times 10^{18} \times 10^{30}$$

$= 188385 \times 10^{48}$ ଅଟେ । ଏଠାରେ 188385 ତ ଛଅ ଅଙ୍କ ବିଶିଷ୍ଟ ଲମ୍ୱା ସଂଖ୍ୟା । ତାହାର ଡାହାଣକୁ ଆଉ 48 ଟି ଶୂନ ଲେଖି ହେବ ତ ? ଭୁଲ ହୋଇଯିବାର ବହୁତ ସମ୍ଭାବନା । ତେଣୁ ଗାଣିତିକ ପଞ୍ଚମ ପ୍ରୟୋଗ ଦ୍ୱାରା ଏହାର କଳେବରକୁ କ୍ଷୁଦ୍ରାଦପି କ୍ଷୁଦ୍ର କରି ଦିଆଯାଇଥାଏ ।

## ୨. ପୃଥିବୀର ବାୟୁମଣ୍ଡଳର ଓଜନ

ପୃଥିବୀର ଓଜନ ଆମ ବାୟୁମଣ୍ଡଳର ଓଜନର କେତେଗୁଣ, ଚାଲ ତାହା

ଆମେ ନିର୍ଣ୍ଣୟ କରିବା । ଆମେ ଜାଣୁ ଯେ ଭୂପୃଷ୍ଠରେ ପ୍ରତି 1 ବର୍ଗ ସେଣ୍ଟିମିଟର ସ୍ଥାନ ଉପରେ ଦଣ୍ଡାୟମାନ ବାୟୁସ୍ତବକର ଓଜନ ପ୍ରାୟ ପ୍ରାୟ 1 କିଲୋଗ୍ରାମ ଓଜନ ଅଟେ । ଭୂପୃଷ୍ଠର କ୍ଷେତ୍ରଫଳ ହେଉଛି 51 କୋଟି ବର୍ଗ କିଲୋମିଟର ଅଟେ ।

51 କୋଟି ବର୍ଗ କିଲୋମିଟର

$= 51 \times 10^7$ ବର୍ଗ କିଲୋମିଟର

$= 51 \times 10^7 \times 10^5 \times 10^5$ ବର୍ଗ ସେଣ୍ଟିମିଟର

($\because$ 1 କି.ମି. $= 10^5$ ସେ.ମି.)

ଆମ ବାୟୁସ୍ତବକର ଓଜନ $= 51 \times 10^{17}$ କିଲୋଗ୍ରାମ ଓଜନ ।

$= 51 \times 10^{14}$ ମେଟ୍ରିକଟନ ଓଜନ

($\because$ 1ଟନ $= 10^3$ କି.ଗ୍ରା ଓଜନ)

ପୃଥିବୀର ଓଜନ $= 6 \times 10^{21}$ ମେଟ୍ରିକଟନ ଓଜନ ହେଲେ ବାୟୁମଣ୍ଡଳ ତୁଳନାରେ ଏହା କେତେ ଭାରୀ ?

$6 \times 10^{14} \div 51 \times 10^{21}$

$$= \frac{6 \times 10^{21}}{51 \times 10^{14}} = \frac{2}{17} \times 10^7$$

$$= \frac{20}{17} \times 10^6 = 10^6$$ ଗୁଣ = ପ୍ରାୟ ଦଶଲକ୍ଷ ଗୁଣ ଭାରୀ

ଏଠାରେ ଗାଣିତିକ ସୁବିଧା ଦୃଷ୍ଟିରୁ $\frac{2}{17}$ ପ୍ରାୟ 1 ସଂଙ୍ଗେ ସମାନ

ଧରାଯାଇଅଛି ।

୩. ସୂର୍ଯ୍ୟ ଏକ ବସ୍ତୁ

ପୃଥିବୀ ତୁଳନାରେ ବହୁତ ବଡ଼, ମାତ୍ର ଗ୍ୟାସୀୟ ପିଣ୍ଡ, ସୂର୍ଯ୍ୟ ଏଇ ଭଳି ଏକ ବସ୍ତୁ । ଏହାର ବସ୍ତୁତ୍ୱ ≐ 2 000 000 000 000 000 000 000 000 000 000 000 ଗ୍ରାମ = $2 \times 10^{33}$ ଗ୍ରାମ । ଏତେ ବଡ଼ ସଂଖ୍ୟା କ୍ଷୁଦ୍ର ରୂପରେ ଲେଖି ହେଉଛି ।

ପୃଥିବୀଠାରୁ ସୂର୍ଯ୍ୟର ଦୂରତା = 15 କୋଟି କିଲୋମିଟର

= $15 \times 10^7$ କିଲୋମିଟର

= $15 \times 10^7 \times 10^3$ ମିଟର

= $15 \times 10^7 \times 10^3 \times 10^2$ ସେଣ୍ଟିମିଟର

= $15 \times 10^{12}$ ସେଣ୍ଟମିଟର

ଯଦି ସୂର୍ଯ୍ୟର ଦୂରତ୍ୱ ଓ ବସ୍ତୁତ୍ୱ ଗୁଣିବାକୁ ପଡେ ତେବେ ତାହାହେବ :

$2 \times 10^{33}$ ଗ୍ରାମ୍ x $15 \times 10^{12}$ ସେଣ୍ଟିମିଟର

= $30 \times 10^{33} \times 10^{12}$ ଗ୍ରାମ ସେଣ୍ଟମିଟର

= $3 \times 10 \times 10^{33} \times 10^{12} = 3 \times 10^{46}$

3 ଡାହାଣରେ ଆମେ କଅଣ ଛୟାଳିଶଟା ଶୂନ ଲେଖି ପାରିବା ?

ତେଣୁ $3 \times 10^{46}$ ଲେଖିଦେଲେ ଯଥେଷ୍ଟ ହେବ ।

## ୪. ବିନା ତାପରେ ଦହନ

ତାପ ପାଇ ଅଙ୍ଗାର ଓ ଅମ୍ଳଜାନ ମିଳିତ ହେଲେ ତାହାକୁ ଦହନ କୁହାଯାଏ । ଏହି ଅଙ୍ଗାର କାଠ, କୋଇଲା, ପେଟ୍ରୋଲ, କିରୋସିନି ବା କଲଗ୍ୟାସ ହୋଇପାରେ । କୋଇଲା ବା କାଠ ଉଚ୍ଚ ତାପମାତ୍ରାରେ ଦୃଶ୍ୟଭାବେ ଜଳୁଥିଲେ ହେଁ ନିମ୍ନ ତାପମାତ୍ରାରେ ବି ଦହନ ଘଟୁଥାଏ । ଏହା ଅତିମାତ୍ରାରେ ଧୀର ଓ ଏହା ପରିଦୃଷ୍ଟ ନହୋଇପାରେ । ରାସାୟନିକ ପ୍ରକ୍ରିୟାର ନିୟମରୁ ଆମେ ଜାଣୁ ଯେ ତାପମାତ୍ରା ନିମ୍ନକୁ 10 ଡିଗ୍ରୀ ଖସିଲେ ରାସାୟନିକ ପ୍ରକ୍ରିୟାର ହାର ଅଧା ହୋଇଯାଏ । ମନେକର :

600 ଡିଗ୍ରୀ ସେଲସିୟସ ତାପମାତ୍ରାରେ 1 ଗ୍ରାମ କାଠ 1 ସେକେଣ୍ଡରେ ସମ୍ପୂର୍ଣ୍ଣ ଭସ୍ମୀଭୂତ ହୁଏ ।

20 ଡିଗ୍ରୀ ସେଲସିୟସ ତାପମାତ୍ରାରେ 1 ଗ୍ରାମ କାଠ କେତେ ସେକେଣ୍ଡରେ ଜଳିପାରିବ ?

ବର୍ତ୍ତମାନ 600 ଡିଗ୍ରୀରୁ 20 ଡିଗ୍ରୀ ବିୟୋଗ କରି ଅବଶିଷ୍ଟକୁ ପ୍ରତି 10 ଡିଗ୍ରୀ ଦ୍ୱାରା ଭାଗ କରି ସମୟ ନିର୍ଣ୍ଣୟ କରିବ ।

$600 - 20 = 580$

580 ଡିଗ୍ରୀ ବା $58 \times 10$ ଡିଗ୍ରୀ ସେଲସିୟସ ତାପମାତ୍ରା ଖସିବାକୁ ବିଳମ୍ବିତ ପକ୍ରିୟା ହେଉଛି $2^{58}$ ; ଅର୍ଥାତ୍ 20 ଡିଗ୍ରୀ ସେଲସିୟସ ତାପମାତ୍ରାରେ

1 ଗ୍ରାମ କାଠ ଜାଳିବା ପାଇଁ $2^{58}$ ସେକେଣ୍ଡ ଲାଗିବ ।

$$2^{58} = 2^{60-2} = 2^{60} \div 2^2 = \frac{1}{4}2^{60}$$

$$= \frac{1}{4} \times (2^{10})^6 = \frac{1}{4} \times (10^3)^6 \quad [\because 2^{10} = 10^3]$$

$$= \frac{1}{4} 10^{18} \text{ ସେକେଣ୍ଡ}$$

$$= \frac{1}{4} 10^{18} \div 3 \times 10^7 \; [\because 1 \text{ ବରଷ} = 3 \times 10^7 \text{ସେକେଣ୍ଡ}]$$

$$= \frac{10^{18}}{4} \div 3 \times 10^7$$

$$= \frac{10^{18} \times 10^{-7}}{4 \times 3} = \frac{10^{11}}{12} \approx 10^{10} \text{ ବର୍ଷ (ପ୍ରାୟ)}$$

ଅର୍ଥାତ୍ 20 ଡିଗ୍ରୀ ସେଲସିୟସ ତାପମାତ୍ରାରେ 1 ଗ୍ରାମ କାଠ ଜଳି ସମ୍ପୂର୍ଣ୍ଣ ଦଗ୍ଧ ହେବା ପାଇଁ $10^{10}$ ବର୍ଷ ବା ଏକ ହଜାର କୋଟି ବର୍ଷ ଲାଗିଯିବ । ଅବଶ୍ୟ ନିଆଁ ଲଗାଇବାର ବିଭିନ୍ନ ଉପାୟ ଉଦ୍ଭାବନ ପରେ ଏବେ କାଠକୁ ଅପେକ୍ଷାକୃତ ସ୍ୱଳ୍ପ ସମୟରେ ଦଗ୍ଧ କରାଯାଇପାରୁଛି ।

## ୫. ନମ୍ବରୀ ତାଲା

ଗୋଟିଏ ବଡ଼ ସିନ୍ଧୁକରେ ଏକ ନମ୍ବରୀ ତାଲା ଲାଗିଛି । ନମ୍ବରୀ ତାଲାରେ ଚାବି ନଥାଏ (ଚିତ୍ରଦେଖ)। ଏଥିରେ ଥିବା ରିଙ୍ଗଗୁଡ଼ିକୁ ଗୋଟିକ ପରେ ଗୋଟିଏ ଘୂରାଇ ନିର୍ଦ୍ଦିଷ୍ଟ ସୂଚକ ସଂଖ୍ୟାଟି ମିଳିଗଲେ ତାଲା ଖୋଲିଯାଏ ।




ଏହି ସଂଖ୍ୟାଟି ଜଣା ନଥିଲେ Trial and Error ପଦ୍ଧତିରେ ସମସ୍ତ ସମ୍ଭାବ୍ୟ ସୂଚକ ସଂଖ୍ୟାକୁ ଚେଷ୍ଟା କରିବାକୁ ହୁଏ । ଏହି ନମ୍ବରୀ ତାଲାଟିରେ 5 ଟି ରିଙ୍ଗ୍ ଅଛି ଓ ପ୍ରତି ରିଙ୍ଗରେ 36 ଟି ଏକ ଅଙ୍କ ବିଶିଷ୍ଟ ସଂଖ୍ୟା ଅଛି । ଏକ ଅଙ୍କ ବିଶିଷ୍ଟ ସଂଖ୍ୟା ଅଛି । ପ୍ରତି ରିଙ୍ଗ୍‌ର ଗୋଟିଏ ସଂଖ୍ୟା ସହ ଅନ୍ୟ ରିଙ୍ଗଗୁଡ଼ିକର ଗୋଟିଏ ଲେଖାଏଁ ସଂଖ୍ୟା ଯୋଡ଼ିଲେ ଗୋଟିଏ ପାଞ୍ଚଅଙ୍କ ବିଶିଷ୍ଟ ସଂଖ୍ୟା ସୃଷ୍ଟି ହେବ । ଏଭଳି କେତୋଟି ସଂଖ୍ୟା ସୃଷ୍ଟି ହୋଇପାରିବ, ଆସ ଦେଖିବା ।

ପ୍ରଥମ ରିଙ୍ଗ୍‌ର ପ୍ରତି ସଂଖ୍ୟାସାଙ୍ଗକୁ ଦ୍ୱିତୀୟ ରିଙ୍ଗ୍‌ର ପ୍ରତି ସଂଖ୍ୟା ଯୋଖିଲେ ସମୁଦାୟ ସଂଖ୍ୟାର ସମ୍ଭାବନା $36^2$ ହେବ । ଏହି $36^2$ ଟି ସମ୍ଭାବ୍ୟ ସଂଖ୍ୟାରୁ ପ୍ରତିଟି ସହ ତୃତୀୟ ରିଙ୍ଗର ପ୍ରତି ସଂଖ୍ୟା ଯୋଡ଼ିଲେ ସଂଖ୍ୟା ସମ୍ଭାବନା $36^3$ ଟି ତିନିଅଙ୍କ ବିଶିଷ୍ଟ ସଂଖ୍ୟାର ପ୍ରତି ସଂଖ୍ୟା ସହ ଚତୁର୍ଥରିଙ୍ଗ ଯୋଡ଼ିଲେ ସଂଖ୍ୟା ସମ୍ଭାବନା $36^4$ ହେବ ଏବଂ ଏହାର ପ୍ରତି ସମ୍ଭାବ୍ୟ ଚାରିଅଙ୍କ ବିଶିଷ୍ଟ ସଂଖ୍ୟା ସହ ପଞ୍ଚମ ରିଙ୍ଗର ପ୍ରତିସଂଖ୍ୟାକୁ ଯୋଡ଼ିଲେ ମୋଟ ସମ୍ଭାବ୍ୟ ସଂଖ୍ୟା $36^5$ ହେବ ।

ପାଞ୍ଚଟି ରିଙ୍ଗକୁ ଖଞ୍ଜି ପାଞ୍ଚଅଙ୍କ ବିଶିଷ୍ଟ ସଂଖ୍ୟାଟିଏ ପାଇବା ପାଇଁ ସମୟ ଲାଗେ ଅନ୍ୟୁନ୍ୟ 3 ସେକେଣ୍ଡ । ତେବେ ($36^5$) ଟି ସଂଖ୍ୟା ପାଇଁ ସମୟ ଲାଗେ $3 \times (36)^5$ ସେକେଣ୍ଡ

$= 3 \times 3^{10} \times 2^{10}$ ସେକେଣ୍ଡ

$= 3^{11} \times 2^{10}$ ସେକେଣ୍ଡ

= 181398528 ସେକେଣ୍ଡ

= 50 ହଜାର ଘଣ୍ଟା = ପ୍ରାୟ ଛଅ ବର୍ଷ

ଜଣେ ଲୋକ ବିଭିନ୍ନ ତାଲାଖୋଲିବା ପ୍ରଚେଷ୍ଟା ଦିନରାତି ଅହରହ କାମ କରି ପାରିବ ନାହିଁ । ଯଦି ଦିନକୁ ସେ ଆଠଘଣ୍ଟା ଏଇ ଭଳି ଅବିରାମ ଖଟେ, ତେବେ ତାକୁ ଏହି ନମ୍ବରୀ ତାଲାଟି ଖୋଲିବା ପାଇଁ ସମୟ ଲାଗିବ :

$5 \times 10^4$ ଘଣ୍ଟା

$= \frac{10^5}{2}$ ଘଣ୍ଟା

$= \frac{10^5}{16}$ ଦିନ

= 6300 ଦିନ ବା 20 ବର୍ଷ

**୬. ତିନୋଟି 2 ବ୍ୟବହାର କରି ସର୍ବୋଚ୍ଚ ସଂଖ୍ୟା ନିର୍ଣ୍ଣୟ ।**

ତିନୋଟି 2 ଅର୍ଥାତ୍ 2, 2 ଏବଂ 2 ଏହାକୁ ବିଭିନ୍ନ ଉପାୟରେ ଲେଖି କେତୋଟି ସଂଖ୍ୟା ହୋଇପାରେ, ଆସ ଦେଖିବା ।

$222, 2^{22}, 22^2, 2^{2^2}, 2 + \frac{2}{2}, \frac{22}{2}, 2 + 2 + 2$ ଇତ୍ୟାଦି । ଏଥିମଧ୍ୟରୁ ସୂଚକ ବା ପାୱାର ଥିବା ସଂଖ୍ୟା ତିନଟି ବଡ଼ ।

$2^{2^2}$, $22^2$, $2^{22}$

$2^{2^2} = 2^4 = 16$

$22^2 = 484$

$2^{22} = 4194304$ । ତେଣୁ $2^{22}$ ଟି ହେଉଛି ସର୍ବୋଚ୍ଚ ସଂଖ୍ୟା ।

**୭. ତିନୋଟି 3 ବ୍ୟବହାର କରି ସର୍ବୋଚ୍ଚ ସଂଖ୍ୟା ନିର୍ଣ୍ଣୟ ।**

ତିନୋଟି ୨ ବ୍ୟବହାର କଲାଭଳି ଏଥର ବି ସମ୍ଭାବ୍ୟ ସଂଖ୍ୟାମାନ ଲେଖ ।

ଯେତେଗୁଡ଼ିଏ ସମ୍ଭାବ୍ୟ ସଂଖ୍ୟା ଏଥିରୁ ମିଳୁଛି ସେଥିରୁ କେବଳ ସୂଚକ ବା ପାଓ୍ୱାର ଥିବା ସଂଖ୍ୟା କୁ ନେବା ।

ସେଗୁଡ଼ିକ ହେଲା : $3^{3^3}$, $33^3$, $3^{33}$

ଚେଷ୍ଟାକରି ଦେଖିବ ଯେ $3^{33}$ ଟି ସର୍ବୋଚ୍ଚ ସଂଖ୍ୟାଅଟେ ।

**୮. ତିନୋଟି 4 ବ୍ୟବହାର କରି ସର୍ବୋଚ୍ଚ ସଂଖ୍ୟା ନିର୍ଣ୍ଣୟ ।**

ତିନୋଟି 2 ଏବଂ ତିନୋଟି 3 ବ୍ୟବହାର କରି ଆମେ ଯେଉଁ ବାଟରେ ଯାଇ ସିଦ୍ଧାନ୍ତରେ ପହଞ୍ଚିଗଲେ, ଅନ୍ଧଭାବେ ସେଇଭଳି ମାଡ଼ିଗଲେ ଭୁଲ ସିଦ୍ଧାନ୍ତରେ ପହଞ୍ଚିବା । ତିନୋଟି 4 କୁ ନେଇ ଯେତେଗୁଡ଼ିଏ ସମ୍ଭାବ୍ୟ ସଂଖ୍ୟା ପାଉଛେ ସେଥିରୁ ସୂଚକ ପ୍ରୟୋଗ ହୋଇଥିବା ସଂଖ୍ୟାମାନ ହେଲା : $4^{4^4}$, $44^4$ ଏବଂ $4^{44}$

$4^{4^4} = 4^{256}$

$44^4 = 1936$

$4^{44} = 4^{44}$

ଉପରୋକ୍ତ ସରଳକରରୁ ଜଣାଯାଏ ଯେ $4^{4^4}$ ହେଉଛି ସର୍ବୋଚ୍ଚ ସଂଖ୍ୟା ।

୯. ଚାରୋଟି 1 ବ୍ୟବହାର କରି ସର୍ବୋଚ୍ଚ ସଂଖ୍ୟା ନିର୍ଣ୍ଣୟ ।

ଆସ, ସମ୍ଭାବ୍ୟ ସଂଖ୍ୟାମାନ ଦେଖିବା ।

1111, 11 + 11, 111 + 1, $\frac{11}{11}$, 11 x 11, $(1)^{111}$, $(111)^1$; $(11)^{11}$ଇତ୍ୟାଦି ।

$1111 = 1111$

$11 + 11 = 22$

$111 + 1 = 112$

$\frac{11}{11} = 1$

$11 \times 11 = 121$

$(1)^{111} = 1$

$(111)^1 = 111$

$(11)^{11}$ = ଏହି ସଂଖ୍ୟାଟି $285 \times 10^9$ ବା 28500 କୋଟି ଠାରୁ ଅଧିକ ଓ ତେଣୁ ସର୍ବୋଚ୍ଚ ସଂଖ୍ୟା ଅଟେ ।

**୧୦. ଚାରୋଟି 2 ବ୍ୟବହାର କରି ସର୍ବୋଚ୍ଚ ସଂଖ୍ୟା ନିର୍ଣ୍ଣୟ ।**

ଏହି ମଜାଳିଆ ବୀଜଗଣିତରେ ଟିକେ ସାବଧାନ ହୋଇ ଗତି କରିବା । ଚାରୋଟି ଦୁଇକୁ ନେଇ ସମ୍ଭାବ୍ୟ ସଂଖ୍ୟାମାନଙ୍କ ମଧ୍ୟରୁ (+), (-), (x) ଚିହ୍ନମାନ ଛାଡ଼ି ନିରୂତା ସୂଚକ ପ୍ରୟୋଗ ହୋଇଥିବା କିଛି ସଂଖ୍ୟା ଏବେ ଲେଖିବା ।

ପ୍ରଥମ ସଂଖ୍ୟା $2222 = 2 \times 10^3$ ବା 2000 ରୁ ସାମାନ୍ୟ ଅଧିକ ।

ଦ୍ୱିତୀୟ ସଂଖ୍ୟା $222^2 = 5 \times 10^4$ ବା 50000 ଠାରୁ ସାନ ।

ତୃତୀୟ ସଂଖ୍ୟା $2^{2^{2^2}} = 2^{16} = 2^4 \times 2^{12}$

$= 2^4 \times 10^3 = 16$ ହଜାର ପ୍ରାୟ

ଚତୁର୍ଥ ସଂଖ୍ୟା $22^{22} = 22^{2 \times 11} = 484^{11}$

ପଞ୍ଚମ ସଂଖ୍ୟା $22^{22} = 22^4 = 2.5 \times 10^5$ ବା 250000 ରୁ ଊଣା ।

ଷଷ୍ଠ ସଂଖ୍ୟା $2^{222}$ ସଂଖ୍ୟାର ରୂପରୁ ଜଣାପଡ଼େ ଯେ ଏହା ଉପର ବର୍ଣ୍ଣିତ ସମସ୍ତ ପାଞ୍ଚଟି ସଂଖ୍ୟାଠାରୁ ବଡ଼ ।

ସପ୍ତମ ସଂଖ୍ୟା $2^{22^2} = (2^2 \times 2^{20})^2 = (4 \times 10^6)^2$

$= 16 \times 10^{12} = 16$ ଲକ୍ଷ କୋଟି

ଅଷ୍ଟମ ସଂଖ୍ୟା $2^{2^{22}} \approx 2^{4000000} > 10^{1200000}$

ଏହି ଅଷ୍ଟମ ସଂଖ୍ୟାଟିର ରୂପରୁ ଜଣାପଡ଼େ ଯେ ଚାରୋଟି 2 କୁ ବ୍ୟବହାର କରି ଯେତେଗୁଡ଼ିଏ ସମ୍ଭାବ୍ୟ ସଂଖ୍ୟା ମିଳେ, ସେଥିମଧ୍ୟରୁ ଉପର ସୂଚିତ ଅଷ୍ଟମ ସଂଖ୍ୟାଟି ହିଁ ସର୍ବୋଚ୍ଚ ସଂଖ୍ୟା ଅଟେ ।

## ୧୧. ପରିବର୍ତ୍ତିତ ପାଣିପାଗ

ଆମେ ଦେଖୁ ଯେ ସବୁ ଦିନରେ ପାଣିପାଗର ସମତା ନଥାଏ । ଅଧିକ ଜଟିଳତାକୁ ନଯାଇ ଆମେ ପାଣିପାଗରୁ ଦୁଇଟି ନିର୍ଦ୍ଦିଷ୍ଟ ସୂଚକ ନେବା, ଯଥା :- ମୁକ୍ତାକାଶ ଓ ମେଘାଚ୍ଛନ୍ନ । ଏହି ଦୁଇଟିରୁ ଆମେ ଦିନକୁ ଦିନ ପାଣିପାଗର ସମ୍ଭାବନା ବିଚାର କରିବା ।

ପ୍ରଥମ ଦିନ ସମ୍ଭାବନା ହେଉଛି : ମୁକ୍ତାକାଶ ବା ମେଘାଚ୍ଛନ୍ନ $\Rightarrow$ ଦୁଇଟି ସମ୍ଭାବନା = $2^1$

ଦ୍ୱିତୀୟ ଦିନ ସମ୍ଭାବନା ହେଉଛି : ମୁକ୍ତାକାଶ ବା ମୁକ୍ତାକାଶ,
ମୁକ୍ତାକାଶ ଓ ମେଘାଚ୍ଛନ୍ନ,
ମେଘାଚ୍ଛନ୍ନ ଓ ମୁକ୍ତାକାଶ,
ବା ମେଗାଚ୍ଛନ୍ନ ଓ ମେଘାଚ୍ଛନ୍ନ
$\Rightarrow$ ଚାରୋଟି ସମ୍ଭାବନା = $2^2$

ତୃତୀୟ ଦିନ ସମ୍ଭାବନା : ତୃତୀୟ ଦିନରେ ଦ୍ୱିତୀୟ ଦିନର ପ୍ରତ୍ୟେକ ସମ୍ଭାବନା ସାଙ୍ଗକୁ ଆଉ ଦୁଇଟି ସମ୍ଭାବନା ଯୋଡି ହୋଇଯାଏ ଓ ମୋଟ ସମ୍ଭାବନା ସଂଖ୍ୟା $4 \times 2 = 8$ ବା $2^3$

ଚତୁର୍ଥ ଦିନରେ ସମ୍ଭାବନା : $2^3 \times 2 = 2^4$

ତେଣୁ ଗୋଟିଏ ସହରରେ ବା 7 ଦିନରେ ପାଣିପାଗର ସମ୍ଭାବନା

ସଂଖ୍ୟା = $2^7$ = 128 ଅର୍ଥାତ ସପ୍ତାହକ ମଧ୍ୟରେ ଆମେ ମୋଟ 128 ପ୍ରକାର ପାଣିପାଗ ଅନୁଭବ କରିବାର ସମ୍ଭାବନା ।

**୧୨. ଭାଗ୍ୟଶାଳୀ ସଂଖ୍ୟା**

ଗୋଟିଏ ଅନ୍ଧବିଶ୍ୱସୀ ସାଇକଲ ଆରୋହୀ ଲାଇସେନ୍ସ କରିବାକୁ ଯାଇ ଦେଖିଲା ଯେ ଲାଇସେନ୍ସ ନମ୍ବରଗୁଡ଼ିକ 000001 ଠାରୁ 999999 ପର୍ଯ୍ୟନ୍ତ ପ୍ରତ୍ୟେକ ଛଅ ଅଙ୍କ ବିଶିଷ୍ଟ ସଂଖ୍ୟା । ଲୋକଟିର ଭୟ ଯେ 8 ଟି ସର୍ବଦା ଅଶୁଭ ସଂଖ୍ୟା ଅଟେ । ତେଣୁ 0, 1, 2, 3, 4, 5, 6, 7, 8, 9 -ଏହି ଦଶଟି ରାଶିରୁ 8 ଟି ବାଦ ଦେଲେ ସେ ଶତକଡ଼ା ନବେ ଭାଗ୍ୟଶାଳୀ ସଂଖ୍ୟାର ସମ୍ଭାବନା ମଧ୍ୟରୁ ଗୋଟିଏ ଟୋକନ ବାଛିନେବ । 8 ବିହୀନ ନଅଗୋଟି ରାଶି ଲେଖିବାର ସମ୍ଭାବନା ସଂଖ୍ୟା = 9 ଅଟେ । ପ୍ରଥମକୁ ଦେଖି ଦ୍ୱିତୀୟଟି ଘରେ ଆଉ ଏକ ରାଶି ଲେଖିବାର ସମ୍ଭାବନା = 9 ଅଟେ । ମାତ୍ର ଦୁଇଟି ଘରକୁ ନେଇ ପ୍ରତ୍ୟେକରେ 9 ଟି ରାଶିରୁ ଗୋଟିଏ ଲେଖାଏଁ ବାଛି ଲେଖିଲେ ସମୁଦାୟ ସଂଖ୍ୟାର ସମ୍ଭାବନା = $9^2$

ତିନୋଟି ଘରେ ଲେଖାଥିବା ବିଭିନ୍ନ ସଂଖ୍ୟାର ସମ୍ଭାବନା = $9^3$

4 ଟି ଘରେ = $9^4$ ; 5 ଟି ଘରେ = $9^5$ ଏବଂ 6 ଟି ଘରେ $9^6$ ଅଟେ । ଏଥିରୁ '000000' ଏହି ସମ୍ଭାବନାଟି ବାଦ ଦେବାକୁ ହେବ, କାରଣ ଏହା ଏକ ସଂଖ୍ୟା ନୁହେଁ । ତେବେ 0, 1, 2, 3, 4, 5, 6, 7, 8, 9 ସଂଖ୍ୟାକୁ ଏକ ବା ଏକାଧିକ ଥର ପ୍ରୟୋଗ କରି ମୋଟ ଛଅଅଙ୍କ ବିଶିଷ୍ଟ ସମ୍ଭାବ୍ୟ ସଂଖ୍ୟା = $9^6 - 1$ = 531440 ଅଟେ, ଯାହାକି ମୋଟ 999999 ଟି ସଂଖ୍ୟାର ଶତକଡ଼ା 53 ଭାଗ ପ୍ରାୟ ।

ଅନ୍ଧବିଶ୍ୱାସୀ ଲୋକଟି ଦଶଟି ରାଶିରୁ ଗୋଟିଏ ରାଶି 8 ବାଦ୍ ଦେଇ ଶତକଡ଼ା ନବେ ସମ୍ଭାବ୍ୟ ଭାଗ୍ୟଶାଳୀ ସଂଖ୍ୟା ପାଇବାକୁ ଇଚ୍ଛା କରିଥିଲେ ହେଁ, ତା'ର ସମ୍ମୁଖରେ ମାତ୍ର ମୋଟ ସମ୍ଭାବ୍ୟ ସଂଖ୍ୟାର ଶତକଡ଼ା 53 ଭାଗ ଭାଗ୍ୟଶାଳୀ ସଂଖ୍ୟା ଗଚ୍ଛିତ ଅଛି । ଏହା ବାସ୍ତବ ହୋଇଥିଲେ ହେଁ ବୀଜଗଣିତର ଏକ ପ୍ରହେଳିକା ।

## ୧୩. ଦ୍ୱି-ବିଭାଜନ (କ)

ଏମିବା ଗୋଟିଏ ଏକକୋଷୀ ଜୀବ । ଏହା ନିଜକୁ ଆପଣାଛାଏଁ ଦୁଇ ଭାଗରେ ବିଭକ୍ତ କରି ଦୁଇଟି ଜୀବରେ ପରିଣତ ହୁଏ; ଏହାକୁ ପ୍ରାଣୀର ଦ୍ୱି-ବିଭାଜନ କହନ୍ତି । ପୁନଶ୍ଚ ପ୍ରତି ନୂଆ ଜୀବ ଦ୍ୱି-ବିଭାଜିତ ହୁଏ । ଏଇଭଳି ଏକରୁ ଦୁଇ, ଦୁଇରୁ ଚାରି , ଚାରିରୁ ଆଠ ଇତ୍ୟାଦି । ଯଦି କୌଣସି ଏମିବା ନଷ୍ଟ ନ ହୁଅନ୍ତି ଓ ଏଇଭଳି ଦ୍ୱି-ବିଭାଜନ ପ୍ରକ୍ରିୟା ଚାଲୁ ରହେ ତେବେ କେତେ ପୁରୁଷାନୁକ୍ରମେ ଏହି ଜୀବ ସୂର୍ଯ୍ୟର ଆୟତନର ଏମିବା ସୃଷ୍ଟି କରି ପାରିବ ? ସୂର୍ଯ୍ୟର ଆୟତନ ହେଉଛି $10^{27}$ ଘନ ମିଟର । ଗୋଟିଏ ଏମିବା ଜନ୍ମର ପ୍ରାୟ 27 ଘଣ୍ଟାପରେ ବିଭାଜିତ ହୁଏ । ଏହା ଜଣା ଯେ ଏମିବା ଏହାର 40ତମ ବିଭାଜନରେ ଯେତିକି ଏମିବା ସୃଷ୍ଟି ହୁଅନ୍ତି, ତାହା ଏକ ଗନମିଟର ସ୍ଥାନ ଅଧିକାର କରନ୍ତି ।

$$10^{27} = (10^3)^9 = (10^3)^9 \, [\because 2^{10} = 1024 \approx 10^3]$$

$$= 2^{90}$$

ଅର୍ଥାତ୍ ଏକ ଘନମିଟର ଅଧିକାର କରିଥିବା ଏମିବା ଆଉ 90 ପୁରୁଷରେ (90[th] generation)ରେ ସୂର୍ଯ୍ୟର ଘନ ପରିମିତ ଏମିବା ସୃଷ୍ଟି କରି ପାରିବ । ଅନ୍ୟଭାଷାରେ ଗୋଟିଏ ଏମିବାର ପୁଅ, ନାତି ଧରି

90+40=130 ପୁରୁଷରେ ସୂର୍ଯ୍ୟର ଆକାର ପରିମିତ ଏମିବା ସୃଷ୍ଟି କରିବ ।

## ୧୪. ଦ୍ୱି-ବିଭାଜନ (ଖ)

ଗୋଟିଏ କାଗଜ ଫର୍ଦ୍ଦକୁ ସମଦ୍ୱିଖଣ୍ଡ କରାଗଲା । ପ୍ରତ୍ୟେକ ଖଣ୍ଡକୁ ପୁନଃ ସମଦ୍ୱିଖଣ୍ଡ କରାଗଲା । ଏଇଭଳି କେତେବାର ସମଦ୍ୱିଖଣ୍ଡ କରି ଚାଲିଲେ ଅବଶେଷରେ ଏକ ପରମାଣୁ ଆକାର ଟୁକୁରା କାଗଜ ସୃଷ୍ଟି ହେବ । ଦତ୍ତ ଅଛି ଯେ କାଗଜ ଫର୍ଦ୍ଦଟିର ଓଜନ = 1 ଗ୍ରାମ ଓଜନ ଏବଂ ଗୋଟିଏ ପରମାଣୁ ଆକାର କାଗଜର ଓଜନ = $10^{-24}$ ଗ୍ରାମ୍ ଓଜନ ।

$$10^{24} = (10^3)^8$$

$$= (2^{10})^8 \; [\because 2^{10} \approx 10^3]$$

$$= 2^{80}$$

ଦତ୍ତ କାଗଜ ଖଣ୍ଡକୁ  ଥର ଦ୍ୱି-ବିଭାଜିତ କରିଚାଲିଲେ ଶେଷ ବିଭାଜନର ସୃଷ୍ଟ ଟୁକୁଡ଼ା ଏକ ପରମାଣୁ ଆକାରର ହେବ ।



# ଷଷ୍ଠ ଅଧ୍ୟାୟ

## ବୀଜଗଣିତର ଭାଷା

ସାହିତ୍ୟର ଭାଷାଠାରୁ ବିଜ୍ଞାନର ଭାଷା, ଇତିହାସର ଭାଷା, ଅର୍ଥନୀତିର ଭାଷା ପ୍ରତ୍ୟେକ ଭିନ୍ନ ଭିନ୍ନ ହେଲାଭଳି ବୀଜଗଣିତର ଭାଷା ମଧ୍ୟ ଭିନ୍ନ ହୋଇଥାଏ । ସମୀକରଣ ହେଉଛି ବୀଜଗଣିତର ଭାଷା । ସାଧାରଣ ଭାଷାରେ ଲିଖିତ ଗାଣିତିକ ଅନୁଚ୍ଛେଦଟିଏ କ୍ଲିଷ୍ଟ ହୋଇଥିଲାବେଳେ ସମୀକରଣରେ ଲେଖିଲେ ସ୍ପଷ୍ଟ ବୁଝି ହୋଇଥାଏ । ଏଇଭଳି କେତୋଟି ଉଦାହରଣ ନିମ୍ନରେ ଦିଆଗଲା ।

### ୧୫. ସମୀକରଣ ଗଠନ

ପ୍ରଶ୍ନଟି ଏଇଭଳି

| ସାଧାରଣ ଭାଷା | ବୀଜଗାଣିତିକ ଭାଷା |
|---|---|
| ଗୋଟିଏ ବଣିକ ପାଖରେ କିଛି ଟଙ୍କା ଥିଲା । | ମନେକର $x$ ଟଙ୍କା ଥିଲା । |
| | $x - 100$ |
| | $x - 100 + \frac{x - 100}{3}$ |

| | |
|---|---|
| ପ୍ରଥମ ବର୍ଷ ସେ ବ୍ୟବସାୟରେ 100 ଟଙ୍କା ଖର୍ଚ୍ଚ କରିଥିଲା । | $\Rightarrow \frac{4x - 400}{3}$ |
| ପ୍ରଥମ ବର୍ଷ ସେ ତାହାର ଏକ ତୃତୀୟାଂଶ ପୁଞ୍ଜି ବଢ଼ାଇଥିଲା । | $\frac{4x - 400}{3} - 100$ <br> $\Rightarrow \frac{4x - 700}{3}$ |
| ଦ୍ୱିତୀୟ ବର୍ଷ ସେ 100 ଟଙ୍କା ଖର୍ଚ୍ଚ କଲା । | $\frac{4x - 700}{3} + \frac{4x - 700}{9}$ |
| ଦ୍ୱିତୀୟ ବର୍ଷ ସେ ପୁଞ୍ଜିର ଏକ ତୃତୀୟାଂଶ ବଢ଼ାଇଥିଲା । | $\Rightarrow \frac{16x - 2800}{9}$ <br> $\frac{16x - 2800}{9} - 100$ |
| ତୃତୀୟ ବର୍ଷ ସେ 100 ଟଙ୍କା ଖର୍ଚ୍ଚ କରିଥିଲା । | $\Rightarrow \frac{16x - 3700}{9}$ |
| ତୃତୀୟ ବର୍ଷ ସେ ପୁଞ୍ଜିର ଏକ ତୃତୀୟାଂଶ ବଢ଼ାଇଥିଲା । | $\frac{16x - 3700}{9} + \frac{16x - 3700}{27}$ |
| ତୃତୀୟ ବର୍ଷ ଶେଷରେ ତାହାର ମୂଳ ପୁଞ୍ଜି ଦ୍ୱିଗୁଣିତ ହୋଇଥିଲା । | $\Rightarrow \frac{64x - 14800}{27}$ <br> $\frac{64x - 14800}{27} = 2x$ |

ଏକ ବୀଜଗାଣିତିକ ଭାଷାରେ ସମୀକରଣଟି ମିଳିଗଲା ଏବଂ ବ୍ୟବସାୟରେ ଲଗାଇଥିବା ପୁଞ୍ଜି ଜାଣିବାରେ ଅସୁବିଧା ନାହିଁ ।

$$\frac{64x - 14800}{27} = 2x$$

$\Rightarrow 10x = 14800$

$\Rightarrow x = 1480$

ବ୍ୟବସାୟୀଟିର ପାଖରେ ମୂଳରୁ 1480 ଟଙ୍କା ଥିଲା ।

## ୧୬. ଗଳ୍ପରୁ ସମୀକରଣ

ଘୋଡ଼ାଟିଏ ଓ ଗଧଟିଏ ପିଠିରେ ବସ୍ତା ବୋଝ ଲଦି ସାଙ୍ଗ ହୋଇ ଯାଉଥିଲେ । ଘୋଡ଼ାକୁ ବୋଝ ବହୁତ ଭାରୀ ହେବାରୁ ହ୍ରେସାରବ କଲା । ଗଧ ପଚାରିଲା, "ତୁ କାହିଁକି ଏଭଳି ବୋବାଉଛୁ ?" ଘୋଡ଼ା କହିଲା, "ତୋ ପିଠିରୁ ମୁ ଗୋଟିଏ ବସ୍ତା ନେଇଗଲେ ମୋ ବସ୍ତା ସଂଖ୍ୟା ଦୁଇଗୁଣ ହୋଇଯିବ । ମାତ୍ର ତୁ ମୋଠାରୁ ଗୋଟିଏ ବସ୍ତା ନେଲେ ତୋର ମୋର ବସ୍ତା ସଂଖ୍ୟା ସମାନ ହୋଇଯିବ ।" ମୁଁ ବୋବାଇବାର କାରଣ ଜାଣି ପାରିଲୁ ? ଗଧ ତ ଏକ ଗଧ । ସେ କାହୁଁ ହିସାବ ଜାଣିବ ? ଆମେ ହିସାବ କରି ଦେଖିବା, ଆସ । ମନେକର ଘୋଡ଼ା ପିଠିରେ ଥିବା ବସ୍ତାସଂଖ୍ୟା $x$ ଏବଂ ଗଧର $y$ ; ଗଧ ପିଠିରୁ ଗୋଟିଏ ବସ୍ତା ନେଇ ଘୋଡ଼ା ପିଠିରେ ଲଦିଲେ ହେବ,

$x + 1 = 2(y - 1)$..............(i)

ଘୋଡ଼ା ପିଠିରୁ ଗୋଟିଏ ବସ୍ତା ନେଇ ଗଧ ପିଠିଲେ ଲଦିଲେ ହେବ,

$x - 1 = y - 1$................(ii)

ଏବେ ଆମେ ଘୋଡ଼ାର ଗାଣିତିକ ଭାଷାରୁ ବୀଜଗଣିତର ଭାଷା, ଅର୍ଥାତ୍ ଦୁଇଟି ସମୀକରଣ ପାଇଲେ ।

ପ୍ରଥମଟିକୁ ସରଳ କଲେ ହେବ, $x = 2y - 3$ ଏବଂ

ଦ୍ୱିତୀୟଟି ହେବ, $x = y + 2$

ସୁଇ ସମୀକରଣରୁ ଏକ ନୂଆ ସମୀକରଣ ମିଳିଲା ।

ତାହାହେଲା

$\therefore 2y - 3 = y + 2$

ବା $y = 5$ ଏବଂ $x = 7$

ଘୋଡ଼ା ପିଠିରେ 7ଟି ଏବଂ ଗଧ ପିଠିରେ 5ଟି ବସ୍ତା ଲଦା ହୋଇଥିଲା ।

**୧୭. ଦୁଇଟି ଅଜଣା ସଂଖ୍ୟା ।**

ରାଜା ଓ ରଞ୍ଜନର ବୟସର ଅନ୍ତର 3 ବର୍ଷ । ରାଜାର ବୟସର 3ଗୁଣକୁ 4ଦ୍ୱାରା ଭାଗ କଲେ ରଂଜନର ବୟସ ମିଳେ । କାହାର ବୟସ କେତେ ?

[ସରଳ ସାଧାରଣ ପ୍ରଶ୍ନଟିଏ । ମାତ୍ର ମାନସାଙ୍କ ବା ପାଟୀଗଣିତ ଦ୍ୱାରା ଏହାର ସମାଧାନ ସହଜ ନୁହେଁ । ବେଶ କଉତୁକରେ ବୀଜଗଣିତ ଏହାର ସମାଧାନ କରିଦିଏ ।]

ଏଠାରେ ରାଜା ଓ ରଞ୍ଜନ ମଧ୍ୟରେ କିଏ ବଡ଼ ସ୍ପଷ୍ଟ ନୁହେଁ । ତେଣୁ ମନେକର ରାଜାର ବୟସ $x$ ବର୍ଷ । ରାଜାର ବୟସର 3 ଗୁଣକୁ 4 ଦ୍ୱାରା ଭାଗ କଲେ ହେବ $\frac{3x}{4}$ ବର୍ଷ = ରଞ୍ଜନର ବୟସ; ଏଇଠାରେ ଜଣାଗଲା ରଞ୍ଜନ୍ ବୟସରେ ସାନ ।

ତେଣୁ ରଞ୍ଜନର ବୟସ $(x - 3)$ ବର୍ଷ

ରଞ୍ଜନର ବୟସ ଜାଣିବା ପାଇଁ ଆମେ ଦୁଇଟି ବୀଜଗାଣିତିକ ସଂଖ୍ୟା ପାଇଲେ ତାହା $(x - 3) = \frac{3x}{4}$

ବା $4x - 12 = 3x$

ବା $x = 12$

$\therefore$ ରାଜାର ବୟସ 12 ବର୍ଷ ଏବଂ ରଂଜନର 9 ବର୍ଷ ।

## ୧୮. ତିନୋଟି ଅଜଣା ସଂଖ୍ୟା ।

ଆଉ ଟିକିଏ ଜଟିଳକୁ ଆମେ ଯିବା । ତିନୋଟି କ୍ରମିକ ସଂଖ୍ୟା ଅଛି । ମଝି ସଂଖ୍ୟାଟିର ବର୍ଗ ଅନ୍ୟ ଦୁଇଟିର ଗୁଣଫଳଠାରୁ 1 ବେଶୀ । ସଂଖ୍ୟାତ୍ରୟ ସ୍ଥିର କର ।

ତିନୋଟି କ୍ରମିକ ସଂଖ୍ୟାରୁ ମନେକର ମଝିଟି $x$ ଅଟେ ।

ତେବେ ସଂଖ୍ୟା ତ୍ରୟ ହେଲା $(x - 1)$, $x$ ,$(x + 1)$

ପ୍ରଶ୍ନ ଅନୁଯାୟୀ $x^2 = (x-1)(x+1)+1$

ବା $(x^2- 1) = (x - 1)(x + 1)$

ବା $(x^2- 1) = (x^2- 1)$

ଏଠାରେ ଆମେ ଏକ ନୂଆ ଅନୁଭୂତି ଅର୍ଜନ କଲେ । ମାତ୍ର ଏହି ଅନୁଭୂତିରୁ ଜାଣିଲେ ଯେ $x = 3$, 50 ବା 107 ଯାହା କିଛି ସଂଖ୍ୟା ନେଲେ ବି ସଦାବେଳେ ମଝି ସଂଖ୍ୟାଟିର ବର୍ଗ ଅନ୍ୟ ଦୁଇଟିର ଗୁଣଫଳଠାରୁ 1 ବେଶି ହେବ । ତେଣ ପୂର୍ବବର୍ତ୍ତୀ ପ୍ରଶ୍ନଭଳି ଆଉ ଏକ ସମୀକରଣ ଆବଶ୍ୟକ ।

## ୧୯. ଚାରି ଭାଇ ।

ଚାରି ଭାଇଙ୍କ ପାଖରେ ଥିବା ଟଙ୍କାତକ ମିଶାଇଦେଲେ ହୁଏ, 45 ଟଙ୍କା । ଯଦି ପ୍ରଥମର ଟଙ୍କାରେ 2 ଟଙ୍କା ମିଶେ, ଦ୍ୱିତୀୟ ଭାଇଠାରୁ 2 ଟଙ୍କା କାଢ଼ି ନିଆଯାଏ, ତୃତୀୟ ଭାଇର ଟଙ୍କା ଦୁଇଗୁଣ କରିଦିଆଯାଏ ଓ ଚତୁର୍ଥର ଟଙ୍କାକୁ ଅଧା କରିଦିଆଯାଏ, ତେବେ ସମସ୍ତଙ୍କ ପାଖରେ ସମାନ ଟଙ୍କା ରହିବ । କାହାର କେତେ ଟଙ୍କା ଅଛି ? ଧାଡ଼ି ଆରମ୍ଭ ମନେକର ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ଭାଇ ପାଖରେ ଯଥାକ୍ରମେ a, b, c ଏବଂ d ସଂଖ୍ୟକ ଟଙ୍କା ଅଛି । ପ୍ରଶ୍ନରୁ ଏହା ବି ଜାଣିହୁଏ ଯେ $a + b + c + d = 45$

ଏବଂ ପ୍ରଶ୍ନ ଅନୁଯାୟୀ $a + 2 = b - 2 = 2c = \frac{d}{2}$

ଏବେ ଆମେ b, c, d ଓ a ର ଟଙ୍କାକୁ ସବୁ a ରେ ପ୍ରକାଶ କରିବା, ଯଥା :-

$a + 2 = b - 2$ ବା $b = a + 4$

$a + 2 = 2c$ ବା $c = \frac{a + 2}{2}$

$a + 2 = \frac{d}{2}$ ବା $d = 2(a+2)$

$\therefore 45 = a + b + c + d$

$= a + (a+4) + \frac{a + 2}{2} + 2(a+2)$

ବା $45 = a + a + 4 + \frac{a + 2}{2} + 2a + 4$

ବା $45 = 4a + 8 + \frac{a + 2}{2} = \frac{8a + 16 + a + 2}{2}$

ବା $8a + 16 + a + 2 = 90$

ବା $9a + 18 = 90$

ବା $9a = 72$

ବା $a = 8, b = 12, c = 5, d = 20$

ଚାରିଭାଇଙ୍କ ପାଖରେ ଯଥା କ୍ରମେ 8ଟ, 12ଟ, 5ଟ ଓ 20ଟଙ୍କା ଥିଲା ।

## ୨୦. ବୀଜଗଣିତର ପ୍ରହେଳିକା ।

ଶିକ୍ଷକ ପିଲାଙ୍କୁ ପଚାରିଲେ ଯଦି 8 x 8 = 54 ହୁଏ, ତେବେ 84 ର ମୂଲ୍ୟ କେତେ ?

ପ୍ରଶ୍ନଟିକୁ ଭୁଲ କହି ଉଡ଼ାଇଦେଲେ ଚଳିବ ନାହିଁ। ଉପରୋକ୍ତ ସଂଖ୍ୟାରେ ବ୍ୟବହୃତ ରାଶିଗୁଡ଼ିକ ସୂଚକ ଅଟେ । ଆସ ଆମେ ସମାଧାନର ଚେଷ୍ଟା କରିବା ।

| ଦଶକ | ଏକକ | ଦଶକ | ଏକକ |
|---|---|---|---|
| 8 | 4 | 5 | 4 |
| $8x$ | 4 | $5x$ | 4 |

ଯଦି $84 = 8x + 4$ ହୁଏ, ତେବେ $54 = 5x + 4$ ଅଟେ ।

ମାତ୍ର $8 \times 8 = 5x + 4$ ବା $5x = 60$ ବା $x = 12$ ଅଟେ ।

ଏହି $x = 12$ ମୂଲ୍ୟକୁ 84 ରେ ପ୍ରୟୋଗ କଲେ ହେବ :

$84 = 8x + 4$

$= 8 \times 12 + 4 = 96 + 4 = 100$

ଏଠାରେ 84 ର ମୂଲ୍ୟ 100 ଅଟେ ।

## ୨୧. ବୀଜଗଣିତର ଛନ୍ଦ

ବିଭିନ୍ନ ଅନୁପାତରେ ମିଶାଯାଇଥିବା ଦୁଇଟି ଚିନି ପାଣି ଦ୍ରବଣ ଅଛି । 3% ଚିନିପାଣି ଓ 30% ଚିନିପାଣି କେଉଁ ଅନୁପାତରେ ମିଶଇଲେ 12% ଚିନିପାଣି ଦ୍ରବଣ ମିଳିବ ?

ମନେକର $x$ ଗ୍ରାମ 3% ଚିନିପାଣି ଓ $y$ ଗ୍ରାମ 30% ଚିନିପାଣି ମିଶାଇଲେ 12% ଚିନିପାଣି ଦ୍ରବଣ ମିଳିବ ।

ତେବେ $0.03x + 0.3y = 0.12(x + y)$

ବା $0.03x + 0.3y = 0.12x + 0.12y$

ବା $0.03x - 0.12x = 0.12y - 0.3y$

ବା $x(.03 - .12) = y(.12 - .3)$

ବା $x(-.09) = y(-.18)$

ବା $x = \frac{-.18}{-.09} \times y$

ବା $x = 2y$

∴ ଆମେ ପ୍ରଥମ ତିନିପାଣି ଦୁଇଗୁଣ ଓ ଦ୍ୱିତୀୟ ତିନିପାଣି 1 ଗୁଣ ନେଇ ମିଶାଇଲେ 12% ଦ୍ରବଣ ମିଳିପାରିବ ।

**୨୨. ତ୍ରିକୋଣମିତିକ କଳ୍ପନା ।**

ଗୋଟିଏ ନଈର ଦୁଇ ପାର୍ଶ୍ୱରେ ଦୁଇଟି ତାଳଗଛ ଅଛି । ଗୋଟିକର ଉଚ୍ଚତା 30 ମିଟର ଓ ଅନ୍ୟଟି 20 ମିଟର, ନଈଟିର ପ୍ରସ୍ଥ 50 ମିଟର ଅଟେ । ପ୍ରତି ତାଳଗଛର ଶୀର୍ଷରେ ଗୋଟିଏ ଲେଖାଏଁ ଚିଲ ବସିଛନ୍ତି । ହଠାତ୍ ନଈମଝିରେ ଦୁଇ ତାଳଗଛ ମଧ୍ୟ ଭାଗରେ ଏକ ମାଛ ଦେଖା ଦେଲା । ମାଛଟିକୁ ପାଇବା ପାଇଁ ଚିଲ ଦ୍ୱୟ ଏକ ସମୟରେ ଗଛ ଛାଡ଼ି ଏକ ସମୟରେ ମାଛ



ପାଖରେ ପହଞ୍ଚିଲେ । ଡେଙ୍ଗା ତାଳଗଛର ମୂଳ ଓ ମାଛ ମଧ୍ୟରେ ଦୂରତା ସ୍ଥିର କର ।

*ସମାଧାନ :* ତାଳଗଛ ଦ୍ୱୟର ମୂଳ ହେଲା M ଏବଂ N

ତାଳଗଛ ଦ୍ୱୟର ଶୀର୍ଷ ହେଲା A ଏବଂ B

F ହେଉଛି ମାଛ ।

ପ୍ରଶ୍ନ ଅନୁସାରେ $AF = BF$

ବା $AF^2 = BF^2$

ବା $AM^2 + MF^2 = BN^2 + NF^2$

ବା $30^2 + x^2 = 20^2 + (50 - x)^2$

ବା $900 + x^2 = 400 + 2500 - 100x + x^2$

ବା $100x = 2000$ ବା $x = 20$

∴ ଡେଙ୍ଗା ତାଳଗଛର ମୂଳରୁ 20 ମିଟର ଦୂରରେ ମାଛଟି ଦୃଶ୍ୟ ହୋଇଥିଲା ।

## ୨୩. ଏକ ବିରାଟ ହରଣ

ବତିଶ କୋଟି କୋଟି କୋଟି କୋଟିକୁ ଆଠ ଲକ୍ଷ କୋଟି କୋଟି କୋଟ କୋଟି ଦ୍ୱାରା ଭାଗ କର । ଦୁଇଟି ପ୍ରକାଣ୍ଡ ସଂଖ୍ୟାର ଏହି ବିରାଟ ହରଣକୁ ଆମେ ବୀଜଗଣିତକ ଭାଷାରେ ପକାଇଦେବା ।

| ସାଧାରଣ ଭାଷା | ବୀଜଗାଣିତିକ ଭାଷା |
|---|---|
| ବତିଶ କୋଟି କୋଟି କୋଟି କୋଟି କୋଟି | $32 \times 10^7 \times 10^7 \times 10^7 \times 10^7 \times 10^7$ |

$\Rightarrow 32 \times 10^{7+7+7+7+7}$

$\Rightarrow 32 \times 10^{35}$

ଆଠ ଲକ୍ଷ କୋଟି କୋଟି କୋଟି କୋଟି $8 \times 10^5 \times 10^7 \times 10^7 \times 10^7 \times 10^7$

$\Rightarrow 8 \times 10^{5+7+7+7+7}$

$\Rightarrow 8 \times 10^{33}$

ପ୍ରଥମଟିକୁ ଭାଜ୍ୟ ନେଇ ଦ୍ୱିତୀୟଟି ଦ୍ୱାରା ହରଣ କଲେ ଭାଗଫଳ

$$\frac{32 \times 10^{35}}{8 \times 10^{33}}$$

$$\Rightarrow \frac{32}{8} \times \frac{10^{35}}{10^{33}}$$

$\Rightarrow 4 \times 10^{35-33}$

$\Rightarrow 4 \times 10^2$

$\Rightarrow$ 400 ଭାଗଫଳ

## ୨୪. ନାଚ ଦଳ

ପୁଅଝିଅ ମିଶି 20 ଜଣ ନାଚ କରୁଥିଲେ । ପୁଅ କେତେ , ଝିଅ କେତେ ଜଣ। ନାହିଁ । ମାତ୍ର ଥରକେ ଗୋଟିଏ ଝିଅ ଗୋଟିଏ ପୁଅ ସଂଙ୍ଗେ ମିଶି ନାଚୁଥିଲା । ରମା ସାତଜଣଙ୍କ ସହମିଶି ନାଚିଛି, ଉମା ଆଠଜଣଙ୍କ ସହ, ଶ୍ୟାମା ନଅଜଣଙ୍କ ସହ ଓ ଏଇ ହାରରେ ସୀମା ସମସ୍ତ ପୁଅଙ୍କ ସହ ନାଚିଛି । ଦଳରେ କେତେ ଜଣ ପୁଅପିଲା ଥିଲେ ?

ଏହାକୁ ଏବେ ବୀଜଗଣିତର ଭାଷାରେ ପକାଇବା ।

ମନେକର ଝିଅଙ୍କ ସଂଖ୍ୟା ଥିଲା $x$

ପ୍ରଥମେ ରମା ସଙ୍ଗେ ନାଚିଥିବା ପୁଅ ସଂଖ୍ୟାସାତ ବା 6 +1

ଦ୍ୱିତୀୟରେ ଉମା ସଙ୍ଗେ ନାଚିଥିବା ପୁଅ ସଂଖ୍ୟା 6 + 2

ତୃତୀୟରେ ଉମା ସଙ୍ଗେ ନାଚିଥିବା ପୁଅ ସଂଖ୍ୟା 6 + 3

ଏହି କ୍ରମରେ $x$ ତମ ଝିଅ ସୀମା ସଙ୍ଗେ ନାଚିଥିବା ପୁଅ ସଂଖ୍ୟା $6 + x$

ଦଳରେ ଝିଅ ସଂଖ୍ୟା = $x$ ଏବଂ ପୁଅ ସଂଖ୍ୟା $6 + x$

ପୁଅ ଝିଅ ମିଶି $(6 + x)+(x)= 20$

$\Rightarrow 2x + 6 = 20$

$\Rightarrow 2x = 14$

$\Rightarrow x = 7$

$\Rightarrow x = 7$ ------ ଝିଅ ସଂଖ୍ୟା

$\Rightarrow 6 + x = 13$ -- ପୁଅ ସଂଖ୍ୟା

## ୨୫. ମଧୁର ଜୀବନ

ମଧୁ ତାର ଜୀବନର ଏକ ବିଂଶାଂଶ ବାଲ୍ୟଖେଳରେ, ଏକ ପଞ୍ଚମାଂଶ ପାଠପଢ଼ାରେ କଟାଇଲା । ପାଠ ଶେଷରେ ଏକ ଅଷ୍ଟମାଂଶ ରାଧାସଙ୍ଗେ ପ୍ରେମଲୀଳାରେ କଟାଇ ବାହାହେଲା ଏବଂ ଏକ ବିଂଶାଂଶ ମଧୁଚନ୍ଦ୍ରିକା ପାଇଁ କାଶ୍ମୀର ଚାଲିଗଲା । ଫେରିବାର ଦୁଇବର୍ଷ ପରେ ମଧୁ ଓ ରାଧାଙ୍କର ଏକ ପୁଅ ହେଲା । ଜୀବନର ଅଧାବୟସ ପିତୃତ୍ୱ ପରେ ମଧୁ ପୁତ୍ରହରା ହୋଇ ଚାରିବର୍ଷପରେ ମରିଗଲା । ମଧୁ ମଲାବେଳକୁ ତାକୁ କେତେ ବୟସ ହୋଇଥିଲା ?

ଏହାକୁ କେବଳ ବୀଜଗଣିତରେ ହିଁ ସମାଧାନ କରିବା ।

| ପ୍ରଶ୍ନର ସାହିତ୍ୟକ ଭାଷା ଓ | ବୀଜଗଣିତର ଭାଷା |
|---|---|
| ମଧୁର ବୟସ କେତେ ? | $x$ ବର୍ଷ ମନେକର |
| ଏକ ବିଂଶାଂଶ ବାଲ୍ୟଖେଳ | $\frac{x}{20}$ ବର୍ଷ |
| ଏକ ପଞ୍ଚମାଂଶ ପାଠ୍ପଢ଼ା | $\frac{x}{5}$ ବର୍ଷ |
| ଏକ ଅଷ୍ଟମାଂଶ ପ୍ରେମଲୀଳା | $\frac{x}{8}$ ବର୍ଷ |
| ଏକ ବିଂଶାଂଶ କାଶ୍ମୀରରେ | $\frac{x}{20}$ ବର୍ଷ |
| ଦୁଇବର୍ଷପରେ ପୁଅ | 2 ବର୍ଷ |
| ଜୀବନର ଅଧାବୟସ | $\frac{x}{2}$ ବର୍ଷ ପିତୃତ୍ୱ |
| ଚାରିବର୍ଷ ପରେ ପରଲୋକ | 4 ବର୍ଷ |

ଏବେ ଆମର ଆବଶ୍ୟକୀୟ ସମୀକରଣଟି ହେଲା :

$$x = \frac{x}{20} + \frac{x}{5} + \frac{x}{8} + \frac{x}{20} + 2 + \frac{x}{2} + 4$$

$\Rightarrow x = 80$

ମଧୁର ବୟସ 80 ବର୍ଷ ହୋଇଥିଲା ।

ମଧୁ 4 ବର୍ଷ ବୟସରେ ପାଠ ଆରମ୍ଭ କରି 20 ବର୍ଷ ବୟସରେ ପାଠ

ଛାଡ଼ିଥିଲା, 30 ବର୍ଷ ବୟସରେ ବିବାହ କରି 36 ବର୍ଷ ବୟସରେ ବାପ ହୋଇଥିଲା; 76 ବର୍ଷ ବୟସରେ ପୁତ୍ରହରା ହୋଇ 80 ବର୍ଷ ବୟସରେ ମରିଗଲା ।

## ୨୬. ବସ ଓ ପଥଚାରୀ

କଟକ-ଭୁବନେଶ୍ୱର ଦୋହରା ରାସ୍ତାରେ ଏକ ନିର୍ଦ୍ଦିଷ୍ଟ ସମୟାନ୍ତରରେ ବସମାନ ଯଥାକ୍ରମେ ଯାଉଥାଏ ଏବଂ ଫେରୁଥାଏ । ବାଟରେ ବସ କେଉଁଠି ରହେନାହିଁ । ରାସ୍ତାକଡ଼ରେ ଭୁବନେଶ୍ୱର ଦିଗରେ ମୁଁ କିଛିବାଟ ଚାଲି ଚାଲି ଗଲାବେଳେ ଦେଖିଲି ଯେ ମୋ ପଛରୁ ଆସୁଥିବା ବସମାନ ମୋତେ ପ୍ରତି 12 ମିନିଟ୍‌ରେ ଅତିକ୍ରମ କଲାବେଳେ, ମୋ ସାମନାରୁ ଆସୁଥିବା ବସମାନ 4 ମିନିଟ୍ ଅନ୍ତରରେ ମୋତେ ଅତିକ୍ରମ କରୁଛି । ଏକ ଦିଗରେ ଦୁଇଟି ବସ ଛାଡ଼ିବାର ସମୟାନ୍ତର ସ୍ଥିର କର ।

ମନେକର ଏହି ସମୟାନ୍ତର $x$ ମିନିଟ୍ । ମୋ ପଛରୁ ଆସୁଥିବା ବସମାନ ଲାଲ ଓ ସାମନାରୁ ଆସୁଥିବା ବସମାନ ସବୁଜ ରଙ୍ଗର ଅଟେ ।

ମୁଁ 12 ମିନିଟ୍‌ରେ ଅତିକ୍ରମ କରୁଥିବା ପଥକୁ ମୋ ପଛରୁ ଆସୁଥିବା ବସ $(12-x)$ ମିନିଟ୍‌ରେ ଅତିକ୍ରମ କରୁଛି । ମୋର ଏକ ମିନିଟ୍‌ର ଅତିକ୍ରାନ୍ତ ପଥ ଲାଲ ବସ୍‌ରେ $\frac{12-x}{12}$ ମିନିଟର ପଥ ଅଟେ । ଦ୍ୱିତୀୟତଃ ମୋର ସାମନାରୁ ଆସୁଥିବା ବସ୍ ମୋତେ 4 ମିନିଟ୍‌ରେ ଅତିକ୍ରମ କରୁଛି । ଅର୍ଥାତ୍ ମୁଁ  ମିନିଟ୍‌ରେ ଯାଉଥିବା ପଥ ସବୁଜ ବସ୍‌ଟି $x$ - 4 ମିନିଟ୍‌ରେ ଅତିକ୍ରମ କରେ । ମୋର ଏକ ମିନିଟ୍‌ର ଅତିକ୍ରାନ୍ତ ପଥ ସବୁଜ ବସ୍‌ର $\frac{x-4}{4}$ ମିନିଟ୍‌ର ପଥ ଅଟେ । ମୁଁ ତ ସମଗତିରେ ଚାଲୁଛି ।

ମୋର 1 ମିନିଟ୍ = ଲାଲ ବସ ପାଇଁ $\frac{12 \cdot x}{12}$ ମିନିଟ୍ ।

ମୋର 1 ମିନିଟ୍ = ସବୁଜ ବସ ପାଇଁ $\frac{x-4}{4}$ ମିନିଟ୍ ।

ସମୀକରଣଟି ହେଲା $\frac{12 - x}{12} = \frac{x-4}{4}$

$$\Rightarrow \frac{12 - x}{3} = x - 4$$

$$\Rightarrow 12 - x = 3x - 12$$

$$\Rightarrow 4x = 24$$

ବା $x = 6$

ଅର୍ଥାତ୍ ଗୋଟିଏ ବସ୍ ଛଡ଼ିବାର 6 ମିନିଟ୍ ଅନ୍ତରରେ ଆଉ ଗୋଟିଏ ବସ୍ ଛାଡ଼ିଥାଏ ।

## ୨୭. ତିନୋଟି ସ୍କୁଟର

ତିନିଜଣ ବନ୍ଧୁ ନିଜ ନିଜର ସ୍କୁଟର ଧରି ଏକ ସମୟରେ କଟକରୁ ପୁରୀ ଯାତ୍ରା କଲେ । ଦ୍ୱିତୀୟ ସ୍କୁଟରଟି ପ୍ରଥମଟି ଅପେକ୍ଷା ଘଣ୍ଟାପ୍ରତି 15 କି.ମି. ଧୀର ଗତିରେ ଓ ତୃତୀୟଟି ଅପେକ୍ଷା 3 କି.ମି. ଅଧିକ ବେଗରେ ଯାଉଥିଲା । ଏହି ସ୍କୁଟରଟି ପ୍ରଥମଟିର 12 ମିନିଟ୍ ପରେ ଏବଂ ତୃତୀୟଟିର 3 ମିନିଟ୍ ପୂର୍ବରୁ ପୁରୀରେ ପହଞ୍ଚିଲା ।

କଟକ-ପୁରୀ ଦୂରତା, ପ୍ରତି ସ୍କୁଟରର ବେଗ ଏବଂ ଅତିକ୍ରାନ୍ତ ସମୟ ସ୍ଥିର କର ।

ଏହି ପ୍ରଶ୍ନଟିରେ ସାତଟି ଅଜଣା ନିର୍ଣ୍ଣୟ କରିବାକୁ ହେବ । ତେବେ ବୀଜଗଣିତର ସାହାଯ୍ୟରେ ଏହାର ସମାଧାନ ଜଟିଳ ହେବନାହିଁ ବୋଲି

ଆଶା । ସର୍ବଦା ମନେ ରଖିବାକୁ ହେବ ଯେ ତିନିଜଣଯାକ ସାଙ୍ଗ, ମାତ୍ର ସେମାନେ ସାଙ୍ଗ ହୋଇ ଯାଇ ନଥିଲେ ।

ମନେକର : କଟକ-ପୁରୀ ଦୂରତା = $x$ କିଲୋମିଟର

ଦ୍ୱିତୀୟ ସ୍କୁଟରଟିର ବେଗ ଘଣ୍ଟାପ୍ରତି $x$ କିଲୋମିଟର

ପ୍ରଥମ ସ୍କୁଟରଟିର ବେଗ ଘଣ୍ଟାପ୍ରତି $x$ +5 କିଲୋମିଟର

ତୃତୀୟ ସ୍କୁଟରଟିର ବେଗ ଘଣ୍ଟାପ୍ରତି $x$ -3 କିଲୋମିଟର

ପ୍ରଥମ ସ୍କୁଟର $y$ କି.ମି. ଦୂରତା ଅତିକ୍ରମ କରେ $\frac{4}{x+15}$ ଘଣ୍ଟାରେ

ଦ୍ୱିତୀୟ ସ୍କୁଟର $y$ କି.ମି. ଦୂରତା ଯାଏ $\frac{y}{x}$ ଘଣ୍ଟାରେ

ତୃତୀୟ ସ୍କୁଟର $y$ କି.ମି. ଦୂରତା ଯାଏ $\frac{y}{x-3}$ ଘଣ୍ଟାରେ

ମୋଟ ପଥ ଅତିକ୍ରାନ୍ତ କରିବାରେ ଦ୍ୱିତୀୟଟି ପ୍ରଥମ ଅପେକ୍ଷା ଅଧିକ 12 ମିନିଟ ବା $\frac{1}{5}$ ଘଣ୍ଟା ନେଇଥାଏ ।

$$\therefore \frac{y}{x} - \frac{y}{x+15} = \frac{1}{5}$$

$$\text{ବା } y\left(\frac{1}{x} - \frac{1}{x+15}\right) = \frac{1}{5} \ldots (a)$$

ସେଇଭଳି ତୃତୀୟଟି ଦ୍ୱିତୀୟ ତୁଳନାରେ 3 ମିନିଟ ବା $\frac{1}{20}$ ଘ. ଅଧିକ ନିଏ ।

$$\frac{y}{x-3}-\frac{y}{x}=\frac{1}{20}$$

ବା $y\left(\frac{1}{x-3}-\frac{1}{x}\right)=\frac{1}{20}$.....(b)

a ଏବଂ b ଉପରୋକ୍ତ ଦୁଇଟି ସମୀକରଣରୁ ମିଳେ :

$$\frac{1}{5}\left\{\frac{x(x+15)}{15}\right\}=\frac{1}{20}\left\{\frac{x(x-3)}{3}\right\}$$

[∴ପ୍ରତ୍ୟେକ $y$ ସଙ୍ଗେ ସମାନ ।]

ବା $3x-225=0$ ବା $x=75$

∴ ସ୍କୁଟର ତିନୋଟିର ଘଣ୍ଟାପ୍ରତି ବେଗ ଯଥାକ୍ରମେ (75+15), 75, (75-3) କି.ମି.

$$y=\frac{1}{20}\left\{\frac{x(x-3)}{3}\right\}$$

$$=\frac{1}{20}\times\frac{75\times72}{3}=90$$

କଟକ-ପୁରୀ ଦୂରତା 90 କି.ମି. ଅଟେ ।

ସ୍କୁଟର ତ୍ରୟ ଏହି ଦୂରତା ଅତିକ୍ରମ କରିବାକୁ ସମୟ ନିଏ, ଯଥାକ୍ରମେ 1ଘ, 1ଘ 12 ମି, 1ଘ 15 ମି.

## ୨୮. ପାଟୀଗଣିତ ବନାମ ବୀଜଗଣିତ

9989 ର ବର୍ଗ ନିର୍ଣ୍ଣୟ କର । ପାଟୀଗଣିତରେ 9989 କୁ 9989 ଦ୍ୱାରା ଗୁଣନ । ଏହା ବହୁ ସମୟ ସାପେକ୍ଷ । 9989 କୁ 9989 ଦ୍ୱାରା ଗୁଣିବା ଅପେକ୍ଷା ବୀଜଗଣିତ୍ ପ୍ରୟୋଗ କରିବା ।

ଆମେ ଜାଣୁ ଯେ 9989 + 11 = 10,000 ବା $10^4$

$$9989 \times 9989 = (9989+11) \times (9989-11) + (11)^2$$

$$= 10^4 \times 9978 + 121$$

$$= 99780000 + 121 = 99780121$$

ଏଠାରେ 9989 କୁ a ଏବଂ 11 କୁ b ଧରିବାରୁ ହେଲା :

$$(a + b)(a - b) + b^2 = a^2$$

$a^2$ ରୁ ଆମେ 9989 ର ବର୍ଗ ପାଇଗଲୁ ।

ଆମେ 10 ବା 50 ର ଗୁଣିତକ ନେଲେ କାମ ଖତମ ।

ଯେପରିକ 27 ର ବର୍ଗ $= (27+3)(27-3) + 3^2 = 729$

63 ର ବର୍ଗ $= (63+3)(63-3) + 3^2 = 3969$

48 ର ବର୍ଗ $= (48+2)(48-2) + 2^2 = 2304$

96 ର ବର୍ଗ $= (96+4)(96-4) + 4^2 = 9216$

ସଂଖ୍ୟାର ଏକକ ଘରେ 5 ଥିଲେ ବର୍ଗ ନିର୍ଣ୍ଣୟ ସହଜ ହୋଇଥାଏ ।

5 ଟି ବାଦ୍ ଦେଇ ଅବଶିଷ୍ଟ ସଂଖ୍ୟା ସଙ୍ଗେ 1 ଅଧିକ ସଂଖ୍ୟା ଗଣିଦିଅ ଓ ଗୁଣଫଳ ଡାହାଣରେ 25 ଲେଖିଦେଲେ ମୂଳ ସଂଖ୍ୟାର ବର୍ଗ ମିଳିଯାଏ, ଯଥା : $75^2$ , 5 ବାଦ୍ ଦେଇ ସଂଖ୍ୟା 7 ସହ 1 ଅଧିକ ଅର୍ଥାତ୍ 8 ସହ ଗୁଣିଦିଅ ।

$7 \times 8 = 56$ $\therefore$ 75ର ବର୍ଗ = 5625

$95^2$; $9 \times 10 = 90$ $\therefore 95^2 = 9025$

$1005^2$; 100 x 101 = 10100   ∴ $1005^2$=1010025

$35^2$;   3 x 4 = 12

∴ $35^2$ = 1225

ଯଦି ଦଶମିକ ବିନ୍ଦୁଟିଏ ଥାଏ :

$3.5^2$; 3 x 4 = 12   ∴ $(3.5)^2$ = 12.25

$7.5^2$; 7 x 8 = 56   ∴ $(7.5)^2$ = 56.25

୨୯. ମୂଳ ସଂଖ୍ୟା ଓ ବର୍ଗର ଏକକ ଘର ଦ୍ୱୟର ସମ୍ପର୍କ ।

ପ୍ରତି ସଂଖ୍ୟାର ଏକକ ଘରେ ହୁଏତ ଏକ ରାଶି 0, 1, 2, 3, 4, 5, 6, 7, 8 ବା 9 ଥାଏ । ବର୍ଗ ନିର୍ଣ୍ଣୟ ପରେ ନୂତନ ସଂଖ୍ୟାଟି ଏକକ ଘରେ କି ରାଶି ମିଳୁଛି ଦେଖିବା ।

| ମୂଳସଂଖ୍ୟା | | | ସଂଖ୍ୟାର ବର୍ଗ | | |
|---|---|---|---|---|---|
| 1 | 0 | | 1 | 0 | 0 |
| 1 | 1 | | 1 | 2 | 1 |
| 1 | 2 | | 1 | 4 | 4 |
| 1 | 3 | | 1 | 6 | 9 |
| 1 | 4 | | 1 | 9 | 6 |
| 1 | 5 | | 2 | 2 | 5 |
| 1 | 6 | | 2 | 5 | 6 |
| 1 | 7 | | 2 | 8 | 9 |
| 1 | 8 | | 3 | 2 | 4 |
| 1 | 9 | | 3 | 6 | 1 |
| 2 | 0 | | 4 | 0 | 0 |

ଉପରୋକ୍ତ ସାରଣୀରୁ ଜଣାପଡ଼େ ଯେ କୌଣସି ସଂଖ୍ୟାର ବର୍ଗର ଏକକ ଘରେ 2, 3, 7, ବା 8 ନଥାଏ । ଅର୍ଥାତ୍ କୌଣସି ସଂଖ୍ୟାର ଏକକ ଘରେ 2, 3, 7, ବା 8 ଥିଲେ ସଂଖ୍ୟାଟି କେବେହେଁ ଏକ ବର୍ଗ ନୁହେଁ ।

ସଂଖ୍ୟାର ଏକକ ଘରେ 1 ବା 9 ଥିଲେ ବର୍ଗର ଏକକ ଘରେ 1 ଆସେ ।

ସଂଖ୍ୟାର ଏକକ ଘରେ 2 ବା 8 ଥିଲେ ବର୍ଗର ଏକକ ଘରେ 4 ଆସେ ।

ସଂଖ୍ୟାର ଏକକ ଘରେ 3 ବା 7 ଥିଲେ ବର୍ଗର ଏକକ ଘରେ 9 ଆସେ ।

ସଂଖ୍ୟାର ଏକକ ଘରେ 4 ବା 6 ଥିଲେ ବର୍ଗର ଏକକ ଘରେ 6 ଆସେ ।

ସଂଖ୍ୟାର ଏକକ ଘରେ 0 ବା 5 ଥିଲେ ବର୍ଗର ଏକକ ଘରେ ଯଥାକ୍ରମେ 0 ଓ 5 ଆସିଥାଏ ।

## ୩୦. ନୂତନ ପ୍ରହେଳିକା ।

ପୂର୍ବୋକ୍ତ ସାରଣୀରୁ ମନେ କରିବା ନାହିଁ ଯେ 1 ସାଙ୍ଗକୁ 9 ବା ଚାରି ସାଙ୍ଗକୁ 6 ଅବା 0 ସାଙ୍ଗକୁ 5 ସର୍ବଦା ସହଗାମୀ । କାରଣ 1, 5 ଏବଂ 6 ର ଆଉ କିଛି ବିଶେଷତ୍ୱ ଅଛି । କୌଣସି ସଂଖ୍ୟାର ଶେଷରେ ଅର୍ଥାତ୍ ଏକକ ଘରେ ଯଦି 1, 5 ବା 6 ଥାଏ, ଏହି ସଂଖ୍ୟାର, ବର୍ଗ, ଘନ ବା ଯେତେ ପାଓ୍ୱାର ଥାଇ ଗୁଣିଲେ ଗୁଣଫଳର ଶେଷରେ ଯଥାକ୍ରମେ ନିଶ୍ଚୟ ସେହି 1, 5 ଓ 6 ଆସିବ; ଯଥା :

$(381)^{25}$ ସଂଖ୍ୟାଟିର ଶେଷରେ 1 ଅଛି ।

$(275)^{27}$ ସଂଖ୍ୟାଟିର ଶେଷରେ 5 ଅଛି ।

$(586)^{685}$ ସଂଖ୍ୟାଟିର ଶେଷରେ 6 ଅଛି ।

ଏଇଭଳି କଉତୁକ ଅନ୍ୟ କୌଣସି ସଂଖ୍ୟା କ୍ଷେତ୍ରରେ ଘଟେ ନାହିଁ ।

୩୧. ଆଉ ଏକ ପ୍ରହେଳିକା ।

ଗୋଟିଏ ସଂଖ୍ୟାର ଶେଷ ଦୁଇଅଙ୍କ 25 ହୋଇଥିଲେ, ଏହି ସଂଖ୍ୟାର ବର୍ଗ, ଘନ ବା ଯେତେ ଥର ଗୁଣଫଳ ନିର୍ଣ୍ଣୟ କଲେ ଗୁଣଫଳଟିର ଶେଷ ଅଙ୍କଦ୍ୱୟ ନିଶ୍ଚୟ 25 ଆସିବ । ସେଇଭଳି 25 ପରିବର୍ତ୍ତେ 76 ନେଇ ବୃହତ ସଂଖ୍ୟାଟି ବାରମ୍ବାର ଗୁଣ । ଗୁଣଫଳର ଶେଷରେ 76 ହିଁ ବିରାଜମାନ କରିବ ।

$25^2 = 625$ ; $25^3 = 15625$;

$76^2 = 5776$ ; $76^3 = 438976$

25 ଏବଂ 76 ର ଅଧିକ ପାୱାର ନେଇ ଗୁଣନ କରି ପରୀକ୍ଷା କର ।

୩୨. ଆହୁରି ମଜା

376 ଏକ ସଂଖ୍ୟା ଏହାକୁ ଯେତେଥର ଗୁଣିଲେ ଗୁଣଫଳ ଶେଷ ତିନିଅଙ୍କରେ 376 ଆସିଥାଏ । ସେଇଭଳି 625 ମଧ୍ୟ । ଅର୍ଥାତ୍ ଯେତେବଡ଼ ସଂଖ୍ୟା ହେଉନା କାହିଁକି ଯଦି ତାହାର ଶେଷ ତିନିଅଙ୍କ 376 ବା 625 ଦେଖାଉଥାଏ, ଏହି ବଡ଼ସଂଖ୍ୟାର ବର୍ଗ, ଘନ ବା ଅଧିକ ପାୱାରର ଗୁଣଫଳରର ଶେଷ ତିନିଅଙ୍କରେ ଯଥାକ୍ରମେ 376 ଓ 625 ଆସିବ ହି ଆସିବ ।

ସଂଖ୍ୟାର ଶେଷରେ 1, 5, 6, 25, 76, 376, 625 ଭଳି ଏକଅଙ୍କ, ଦ୍ୱିଅଙ୍କ, ତିନିଅଙ୍କ ଥିଲେ ସେହି ସଂଖ୍ୟାର ଗୁଣିତକରେ କି ବୈଚିତ୍ର୍ୟ ଘଟେ ଆମେ ଜାଣିଲେ । ଏଇଭଳି ଚାରିଅଙ୍କ ଥିବା ବଡ଼ ସଂଖ୍ୟା ଗୁଣିତକରେ ଘଟେ କି ? ଯେଉଁ ସଂଖ୍ୟାର ଶେଷ ଚାରିଅଙ୍କ 9376 ବା 0625 ଥିଲେ ଏହି ସଂଖ୍ୟାର ବର୍ଗ, ଘନ ଆଦି ଗୁଣିତକ ନିର୍ଣ୍ଣୟ କରି ଦେଖତ; ଗୁଣଫଳର ଶେଷରେ ଯଥାକ୍ରମେ 9376 ଓ 0625 ଆସୁଛି କି ନା ?

**୩୩. ବିଷମ ସମସ୍ୟା ।**

ତିନୋଟି ପିଲା ରାସ୍ତାରେ ଗଲାବେଳେ ଦେଖିଲେ ଗୋଟିଏ ମଟର ଗାଡ଼ି ଦୁର୍ଘଟଣାଟିଏ ଘଟାଇ ହଠାତ୍ ଉଭାନ୍ ହୋଇଗଲା । ପିଲାମାନେ ଗାଡ଼ିଟିର ନମ୍ବର ପ୍ଲେଟ୍‌ରେ ଥିବା ସଂଖ୍ୟାଟି ପଢ଼ି ସମ୍ପୂର୍ଣ୍ଣ ମନେ ରଖି ପାରିଲେ ନାହିଁ । ପୋଲିସ ଆସି ପଚାରିବାରୁ ପ୍ରଥମ ପିଲାଟି କହିଲା ଯେ ତା'ର ମନେ ହେଉଛି ଚାରିଅଙ୍କ ବିଶିଷ୍ଟ ସଂଖ୍ୟାଟିର ବାମ ଅଙ୍କ ଦ୍ୱୟ ସମାନ ଥିଲା । ଦ୍ୱିତୀୟ ପିଲା କହିଲା ଯେ ଡାହାଣ ଅଙ୍କ ଦ୍ୱୟ ସମାନ ଥିଲା ମାତ୍ର ବାମ ଦ୍ୱୟ ଠାରୁ ଭିନ୍ନ ଥିଲା । ଶେଷ ପିଲାଟି କହିଲା ଯେ ତା'ର ମନେ ହେଉଛି ଯେ ସମ୍ପୂର୍ଣ୍ଣ ସଂଖ୍ୟାଟି ଏକ ପୂର୍ଣ୍ଣବର୍ଗ ଥିଲା । ଏଥିରୁ କି ନମ୍ବର ପ୍ଲେଟର ସଂଖ୍ୟା ନିର୍ଣ୍ଣୟ କରାଯାଇପାରେ ?

ଯେହେତୁ ସଂଖ୍ୟାଟିର ପ୍ରଥମ ଅଙ୍କ ଦ୍ୱୟ ସମାନ ଓ ଶେଷ ଅଙ୍କ ଦ୍ୱୟ ସମାନ ଥିବାରୁ ଜଣାଯାଏ ଯେ ସଂଖ୍ୟାଟି ନିଧାର୍ଯ୍ୟ ଭାବେ 11 ଦ୍ୱାରା ବିଭାଜ୍ୟ ପ୍ରଥମ ଯୋଡ଼ିର ଗୋଟିଏ ଅଙ୍କ ଏବଂ ଦ୍ୱିତୀୟ ଯୋଡ଼ିର ଗୋଟିଏ ଅଙ୍କର ସମଷ୍ଟି 11 ହେଉଥିବ । ପୁନଶ୍ଚ ସଂଖ୍ୟାଟି ଏକ ପୂର୍ଣ୍ଣବର୍ଗ ହୋଇଥିବାରୁ ଏହାର

ଶେଷଅଙ୍କଟି କେବେହେଁ 2, 3, 7 ବା 8 ହୋଇ ନଥିବ ।

ଏଭଳି ସଂଖ୍ୟା ବାଛିବାରେ ଆମ ଆଗରେ ମାତ୍ର ଚାରିଗୋଟି ସଂଖ୍ୟା ମନକୁ ଆସେ । ତାହା ହେଲା : 2299, 5566, 6655 ଏବଂ 7744

2299 = 11 x 11 x 19 ...........ତେଣୁ ଏହା ଗୋଟିଏ ପୂର୍ଣ୍ଣବର୍ଗ ନୁହେଁ ।

5566 = ଏହାର ଶେଷ ଦୁଇଅଙ୍କ 66 ସଂଖ୍ୟାଟି 4 ଦ୍ୱାରା ବିଭାଜ୍ୟ ନହବାରୁ ପୂର୍ଣ୍ଣ ବର୍ଗ ନୁହେଁ ।

6655 = ଏହାର ଶେଷ ଦୁଇଅଙ୍କ 55 ସଂଖ୍ୟାଟି 25 ଦ୍ୱାରା ବିଭାଜ୍ୟ ନହେବାରୁ ପୂର୍ଣ୍ଣ ବର୍ଗ ନୁହେଁ ।

7744 = $(88)^2$ ; ତେଣୁ ମଟରଗାଡ଼ି ନମ୍ବର ପ୍ଲେଟ୍‌ରେ ଥିବା ସଂଖ୍ୟାଟି 7744 ଅଟେ ।

**୩୪. ହ୍ୟାଣ୍ଡସେକ୍ ଗଣନା ।**

କେତେକ ସାଙ୍ଗ ବହୁତ ଦିନପରେ କ୍ଲବ ଘରେ ଏକତ୍ର ହୋଇଥିଲେ । ପ୍ରତ୍ୟେକ ଅନ୍ୟ ସହିତ ହ୍ୟାଣ୍ଡସେକ୍ କରିବାରୁ ମୋଟ ହ୍ୟାଣ୍ଡସେକ୍ ସଂଖ୍ୟା 66 ହେଲା । ମୋଟ କେତେଜଣ ସେଠାରେ ଉପସ୍ଥିତ ଥିଲେ ?

ମନେ $x$ ଜଣ ଉପସ୍ଥିତ ଥିଲେ । ତେଣୁ ପ୍ରତ୍ୟେକ $(x - 1)$ ଲୋକଙ୍କ ସହ ହ୍ୟାଣ୍ଡସେକ୍ କରିଛନ୍ତି । ତାହାହେଲେ ହିସାବରେ ମୋଟ ହ୍ୟାଣ୍ଡସେକ୍ ସଂଖ୍ୟା $x(x - 1)$ ହେବା କଥା । । ମାତ୍ର ଏଠାରେ ଖିଆଲରେ ରଖିବାକୁ

ହେବ ଯେ ରାମ ଶ୍ୟାମ ସଙ୍ଗେ ହ୍ୟାଣ୍ଡସେକ୍ କଲାବେଳେ ତାହା ଶ୍ୟାମର ରାମ ସଙ୍ଗେ ହ୍ୟାଣ୍ଡସେକ୍ ଭାବେ ବି ଗୃହୀତ ହେଉଛି । ତେଣୁ ବୀଜଗାଣିତକ ହିସାବରେ ମୋଟ ହ୍ୟାଣ୍ଡସେକ୍ ସଂଖ୍ୟା ହେଉଛି ।

$\frac{x(x-1)}{2}$ ଯାହାକି 66 ସଂଗେ ସମାନ ।

$$\frac{x(x-1)}{2} = 66$$

ବା $x^2 - x = 132$

ବା $x^2 - x - 132 = 0$

ବା $x = \frac{1 \pm \sqrt{1+528}}{2}$

ବା $= 12$ ଏବଂ $-11$

ଋଣ ମୂଲ୍ୟ -11 ର ଏଠାରେ ଯଥାର୍ଥତା ନାହିଁ ତେଣୁ ଦ୍ୱିତୀୟ ମୂଲ୍ୟ ଗ୍ରହଣୀୟ ନୁହେଁ । ତେଣୁ ମୋଟ 12 ଜଣ ଲୋକ କ୍ଲବଘରେ ଉପସ୍ଥିତ ଥିଲେ ।

**୩୫. ଦ୍ୱିତୀୟ ମୂଲ୍ୟ ଗ୍ରହଣୀୟ ।**

ଏକ ମାଙ୍କଡ ପଲ ବସିଥିଲେ । ସେମାନଙ୍କ ମଧ୍ୟରୁ ଏକ ଅଷ୍ଟମାଂଶର ବର୍ଗ ସଂଖ୍ୟକ ମାଙ୍କଡ଼ ନୀରବରେ ବସି ପରସ୍ପରର ଉକୁଣୀ ବାଛୁଥିଲେ । ଆଉ 12 ଟି ମାଙ୍କଡ ଏଡାଳରୁ ସେ ଡାଳକୁ ଡେଇଁ ଚିଲାଉ ଥିଲେ । ମୋଟ ମାଙ୍କଡ଼ ସଂଖ୍ୟା ସ୍ଥିର କର ।

ମନେକର ମୋଟ ମାଙ୍କଡ଼ ସଂଖ୍ୟା = $x$ ଏବଂ $\left(\frac{x}{8}\right)^2$ ସଂଖ୍ୟକ

ମାଙ୍କଡ଼ ଉକୁଣୀ ବାଛୁଥିଲେ ।

$$\therefore \left(\frac{x}{8}\right)^2 + 12 = x$$

$$\text{ବା } \frac{x^{2}}{64} + 12 = x$$

$$\text{ବା } x + 768 = 64x \text{ ବା } x^2 - 64x + 786 = 0$$

$$\text{ବା } (x - 48)(x - 16) = 0$$

$$\therefore x = 48 \text{ ବା } 16$$

ଏଠାରେ ମାଙ୍କଡ଼ ସଂଖ୍ୟା 48 ବା 16 ଯେଉଁଟି ନେଲେ ବି ଠିକ୍ ହେବ । ପରୀକ୍ଷା କରି ଦେଖନା ।

**୩୬. ପିଥାଗୋରାସଙ୍କ ଠାରୁ ଭିନ୍ନ ।**

ଆମେ ଜାଣିଛୁ ଯେ $8^2 + 6^2 = 10^2$; $12^2 + 5^2 = 13^2$ ଅଟେ । ଏଗୁଡ଼ିକ ସବୁ ଜ୍ୟାମିତିର ସମକୋଣୀ ତ୍ରିଭୁଜ ସମ୍ପର୍କୀୟ ସୂତ୍ର : ଦୁଇଟି ସଂଖ୍ୟାର ବର୍ଗର ସମଷ୍ଟି ତୃତୀୟର ବର୍ଗ ସଙ୍ଗେ ସମାନ । ମାତ୍ର ଏହି ଭିନ୍ନ ଅଙ୍କଟି ହେଲା ପାଞ୍ଚଟି କ୍ରମିକ ସଂଖ୍ୟା ମଧ୍ୟରୁ ପ୍ରଥମ ତିନୋଟିର ବର୍ଗ ସମଷ୍ଟି; ଶେଷ ଦୁଇଟିର ବର୍ଗର ସମଷ୍ଟି ସଙ୍ଗେ ସମାନ ।

ମନେକର ପାଞ୍ଚଟିରୁ ମଝି ସଂଖ୍ୟାଟି $x$ ଅଟେ ।

ତେବେ ସଂଖ୍ୟାମାନ ହେଲା : $x-2$, $x-1$, $x$, $x+1$, $x+2$

ପ୍ରଶ୍ନ ଅନୁସାରେ $(x-2)^2 + (x-1)^2 + x^2$

$= (x+1)^2 + (x+2)^2$

ବା $(x^2 - 4x + 4) + (x^2 - 2x + 1) + x^2$

$= (x + 2x+1) + (x^2+4x+4)$

ବା $3x^2 - 6x + 5 = 2x^2 + 6x + 5$

ବା $x^2-12x = 0$ ବା $x(x - 12) = 0$

ବା $x = 12$ ବା 0

ଯଦି $x = 12$ ମୂଲ୍ୟକୁ ନେବା,

ତେବେ : $10^2 + 11^2 + 12^2 = 13^2 + 14^2$

ଯଦି $x = 0$ ମୂଲ୍ୟକୁ ନେବା,

ତେବେ : $(-2)^2+(-1)^2 + 0^2 = (1)+(2)^2$

ପରୀକ୍ଷା କରି ଦେଖିଲ, ଅଙ୍କ ଠିକ ଅଛି ତ !

### ୩୭ ସର୍ବନିମ୍ନ ତାରବାଡ଼ ଖର୍ଚ୍ଚ

100 ବର୍ଗମିଟର କ୍ଷେତ୍ରଫଳ ବିଶିଷ୍ଟ ଗୋଟିଏ ଆୟତାକାର କ୍ଷେତ୍ରର ଚାରିକଡ଼େ ତାରବାଡ଼ ଦେବାକୁ ହେବ । ଆୟତକ୍ଷେତ୍ରର ଦୈର୍ଘ୍ୟ, ପ୍ରସ୍ଥ ଯଥାକ୍ରମେ କେତେ ହେଲେ ଖର୍ଚ୍ଚ କମ ହେବ ?

ମନେକର କ୍ଷେତ୍ରର ଦୈର୍ଘ୍ୟ $x$ ମିଟର, ପ୍ରସ୍ଥ $y$ ମିଟର, କ୍ଷେତ୍ରଫଳ $xy = 100$ କି.ମି.

ଏଠାରେ ର ମୂଲ୍ୟ ନିର୍ଦ୍ଦିଷ୍ଟ ଅଛି ଯାହାକି 100 ;ମାତ୍ର କ୍ଷେତ୍ରର ପରିସୀମା $2x + 2y$ କାଢ଼ିବାକୁ ହେବ ।

ଯଦି $x = 50$, $y = 2$ ତେବେ $2x + 2y = 104$

ଯଦି $x = 40$, $y = 2.5$ ତେବେ $2x + 2y = 85$

ଯଦି $x = 25$, $y = 4$ ତେବେ $2x + 2y = 58$

ଯଦି $x = 20$, $y = 5$ ତେବେ $2x + 2y = 50$

ଯଦି $x = 10$, $y = 10$ ତେବେ $2x + 2y = 40$

ତାହାହେଲେ ଜଣାଗଲା ଆୟତକ୍ଷେତ୍ରର ଦୈର୍ଘ୍ୟ ଓ ପ୍ରସ୍ଥ ଯଦି ସମାନ ହୋଇଯାଏ ଅର୍ଥାତ୍ କ୍ଷେତ୍ରଟି ବର୍ଗକ୍ଷେତ୍ର ହେଲେ ପରିସୀମା କମ ହେବ ଏବଂ ତାରବଡ଼ ଦେବା ଖର୍ଚ୍ଚ ବି କମ୍ ହେବ ।

**୩୮. ପାଞ୍ଚ ଭାଇଙ୍କର ସେଓ ବଣ୍ଟା ।**

600 ଟି ସେଓ ପାଞ୍ଚ ଭାଇ ଆପୋଷରେ ବାଣ୍ଟିନେଲେ । କନିଷ୍ଠ (ପଞ୍ଚମ) ଭାଇ ଠାରୁ ଚତୁର୍ଥ ଭାଇ ଯେତିକି ଅଧିକ ପାଇଲା, ତୃତୀୟ ଚତୁର୍ଥଠାରୁ ସେତିକି ଅଧିକ, ଦ୍ୱିତୀୟ ତୃତୀୟ ଠାରୁ ସେତିକି ଅଧିକ ଏବଂ ଜ୍ୟେଷ୍ଠ ଭାଇ ଦ୍ୱିତୀୟ ଠାରୁ ସେତିକି ଅଧିକ ପାଇଲା । ସାନ ଦୁଇଭାଇଙ୍କର ସେଓ ସଂଖ୍ୟାର ସମଷ୍ଟି ଅନ୍ୟ ତିନିଭାଇଙ୍କର ସେଓ, ସମଷ୍ଟିର ଏକ ସପ୍ତମାଂଶ ଅଟେ ।

ମନେକର ଜଣେ ଭାଇଠାରୁ ତା'ର ନିକଟତମ ବଡ଼ଭାଇ $y$ ଟି ସେଓ

ଅଧିକ ପାଇଛି ଓ ସର୍ବ କନିଷ୍ଠ ଭାଇଟି $x$ ଟି ସେଓ ପାଇଛି ।

ତେବେ କନିଷ୍ଠ ଭାଇ ପାଇଛି $x$

ଚତୁର୍ଥ ଭାଇ ପାଇଛି $x + y$

ତୃତୀୟ ଭାଇ ପାଇଛି $x + 2y$

ଦ୍ୱିତୀୟ ଭାଇ ପାଇଛି $x + 3y$

ପ୍ରଥମ ଭାଇ ପାଇଛି $x + 4y$

ତାହାହେଲେ $x + (x + y) + (x + 2y) + (x + 3y) + (x + 4y) = 600$

ବା $5x + 10y = 600$ ବା $x + 2y = 120$............(a)

ଅନ୍ୟଦିଗରୁ $\{x + (x + y)\} \times 7$

$= (x + 2y) + (x + 3y) + (x + 4y)$

ବା $(2x + y) \times 7 = 3x + 9y$

ବା $14x + 7y = 3x + 9y$

ବା $11x = 2y$ ......................(b)

ଏଥିରୁ ଜଣାପଡ଼େ $x = 10$ ଏବଂ $y = 55$

ଭାଇମାନେ ବଡ଼ରୁ ସାନକ୍ରମେ 230, 175, 120, 65 ଓ 10ଟି ସେଓ ପାଇଛନ୍ତି ।

୩୯. ବିନ୍ଦୁ ବିନ୍ଦୁ ଜଳ ମହାସିନ୍ଧୁ ।

ଗୋଟିଏ ବଗିଚାରେ 16 ମିଟର ଦୈର୍ଘ୍ୟ ବିଶିଷ୍ଟ 300 ଧାଡ଼ି ଗଛ ଅଛି । ପ୍ରତ୍ୟେକ ଧାଡ଼ି ଅଢ଼େଇମିଟର ଓସାର । ବଗିଚାର ଧାରରୁ , 14 ମିଟର ଦୂରରେ କୂଅଟିଏ ଅଛି । ଗୋଟିଏ ମାଳୀ ଦୈନିକ କୂଅରୁ ପାଣି କାଢ଼ି ଧାଡ଼ି ପରେ ଧାଡ଼ି ଗଛରେ ପାଣି ମଡ଼ାଇଥାଏ । ସମୁଦାୟ ପାଣି ମଡ଼ାଇବାକୁ ମାଳୀଟି କେତେ ପଥ ଚାଲିଥାଏ ?

ପ୍ରଥମ ଧାଡ଼ି ପାଇଁ ମାଳୀଟି ଚାଲେ $16 + 14 + 2.5 + 16 + 2.5 + 14 = 65$ ମିଟର

ଦ୍ୱିତୀୟ ଧାଡ଼ି ପାଇଁ ମିଟର ଲେଖାଏଁ ଦୁଇଥର ଅଧିକ ଚାଲିବ, ଅର୍ଥାତ୍ ଦ୍ୱିତୀୟ ଧାଡ଼ିରେ ମାଳୀଟି ସର୍ବମୋଟ ଚାଲିଥାଏ : $14 + 2.5 + 16 + 2.5 + 16 + 2.5 + 2.5 + 14 = 70$ ମିଟର

ପରବର୍ତ୍ତୀ ଧାଡ଼ିରେ ଚାଲିବ ଆଉ ଅଧିକ 5 ମିଟର

30 ଟି ଧାଡ଼ିରେ ପାଣି ଦେବା ପାଇଁ ମାଳୀଟି ଚାଲେ: $65 \times 30 + 5\{1+2+3......+28+29\}$ମି

$= 1950 + \frac{5 \times 29(29+1)}{2}$ ମି

$= 1950$ମି $+ 2175$ମି

$= 4125$ମିଟର

ଅର୍ଥାତ୍ ମାଳୀଟି ବଗିଚାରେ ମାମୁଲି ପାଣି ଦେବା କାର୍ଯ୍ୟରେ ସର୍ବମୋଟ

$4\frac{1}{8}$ କିଲୋମିଟର ପଥ ଚାଲିଥାଏ ।

## ୪୦. ଅଦ୍ଭୁତ ପ୍ରଶ୍ନ

କିଛି ପିଲା ସ୍କୁଲ ବଗିଚାରେ ଏକ ଖାତ ଖୋଳିବାକୁ ନିଷ୍ପତ୍ତି କଲେ । ସମସ୍ତେ ଏକ ସମୟରେ କାମ କରିଥିଲେ 24 ଘଣ୍ଟାରେ କାମଟି ସରିଥାଆନ୍ତା । ମାତ୍ର ପ୍ରଥମେ ଜଣେ କାମ ଆରମ୍ଭ କଲା । ଏକ ନିର୍ଦ୍ଦିଷ୍ଟ ସମୟପରେ ଆଉ ଜଣେ ପ୍ରଥମଟି ସଙ୍ଗେ ଯୋଗଦେଲା । ସେହି ନିର୍ଦ୍ଦିଷ୍ଟ ସମୟାନ୍ତରରେ ତୃତୀୟ, ତା' ପରେ ଚତୁର୍ଥ; ଏଇଭଳି ଜଣକ ପରେ ଜଣେ କାମରେ ଯୋଗଦେଲେ । ଶେଷରେ ଦେଖାଗଲା ଯେ ପ୍ରଥମ ପିଲାଟି ଶେଷ ପିଲାଟି କାମ କରିଥିବା ସମୟର 11 ଗୁଣ ସମୟ କାମ କରିଛି । ତେବେ ଶେଷ ପିଲାଟି କେତେ ଘଣ୍ଟା ଖଟିଛି ?

ମନେକର ଶେଷ ପିଲାଟି $x$ ଘଣ୍ଟା ଖଟିଛି ଏବଂ ମୋଟ $y$ ଜଣ ପିଲା ଖାତ ଖୋଳିଥିଲେ ।

ତେବେ ପ୍ରଥମ ପିଲାଟି ନିଶ୍ଚୟ $11x$ ଘଣ୍ଟା କାମ କରିଛି । ଯଦି କାମକୁ ମଣିଷ ଓ ଘଣ୍ଟାରେ ପ୍ରକାଶ କରାଯାଏ ତେବେ:

$$\therefore \text{ମୋଟ କାମ } \frac{(11x + x)y}{2} = 6xy.$$

ଅନ୍ୟ ଦୃଷ୍ଟିରୁ ଦେଖିଲେ ନିର୍ଦ୍ଧାରିତ 24 ଘଣ୍ଟାରେ $y$ ସଂଖ୍ୟକ ପିଲା କାମ କରିଥାନ୍ତେ $24y$

ତେଣୁ $6xy = 24y$

ବା $6x = 24$ (ଯେହେତୁ $y \neq 0$ )

ବା $x = 4$

ଅର୍ଥାତ୍ ଶେଷ ପିଲାଟି ମୋଟ ଚାରିଘଣ୍ଟା କାମ କରିଛି ।

ଯାହା ପଚାରାଯାଇଥିଲା, ଆମେ ପାଇଗଲୁ । ମାତ୍ର ପ୍ରଶ୍ନ ଉଠେ ଯେ କେତେ ପିଲା କାମ କରୁଥିଲେ ? ଆମେ ତ ଲେଖିସାରିଛୁ ତାହା ଶୂନ ନୁହେଁ । ଋଣାତ୍ମକ ନୁହେଁ, ଭଗ୍ନାଂଶ ତ କେଭେ ହେଁ ନୁହେଁ । ଛାଡ଼ ସେକଥା ତ ପଚରାଯାଇନାହିଁ ।

**୪୧. କଟା ସେଓ ବିକ୍ରୀ ?**

ଜଣେ ଫଳ ଦୋକାନୀ ପାଖରେ କେବଳ କିଛି ସେଓ ବିକ୍ରୀପାଇଁ ଥିଲା । ସାଧାରଣତଃ ବଜାରରେ ସେଓ କଟା ହୋଇ ଫାଳେ ବିକ୍ରୀ ହୁଏ ନାହିଁ । ମାତ୍ର ଦୋକାନୀଟି ଜଣେ ଗରାଖକୁ ତା' ପାଖରେ ଥିବା ସେଓରୁ ଅର୍ଦ୍ଧ ସଂଖ୍ୟକ ଏବଂ ଆଉ ଫାଳେ ସେଓ ବିକିଲା । ସେଇଭଳି ଦ୍ୱିତୀୟ ଗରାଖକୁ ଅବଶିଷ୍ଟ ସେଓରୁ ଅଧେ ଓ ଆଉ ଫାଳେ ଦେଲା । ତୃତୀୟକୁ, ଚତୁର୍ଥକୁ, ପଞ୍ଚମକୁ, ଷଷ୍ଠକୁ କ୍ରମାନ୍ୱୟରେ ଏଇଭଳି ଅବଶିଷ୍ଟ ସେଓରୁ ଅଧେ ଓ ଆଉ ଫାଳେ ଦେଲା । ସପ୍ତମ ଗରାଖକୁ ଅବଶିଷ୍ଟର ଅଧେ ଓ ଫାଳେ ଦେଇସାରିଲା ପରେ ଦେଖିଲା ତା' ପାଖରେ ଆଉ ସେଓ ବଳକା ନାହିଁ । ଦୋକାନୀଟି ମୋଟ କେତେ ସେଓ ରଖିଥିଲା ଓ କ୍ରେତାମାନେ ଯଥାକ୍ରମେ କେତେ ଲେଖାଏଁ ସେଓ ନେଲେ ?

ମନେକର ଦୋକାନୀ ପାଖରେ $x$ ଟି ସେଓ ଥିଲା ।

ପ୍ରଥମ ଗରାଖ (କ୍ରେତା) ନେଲା : $\frac{x}{2} + \frac{1}{2}$ ବା $\frac{x+1}{2}$ ସେଓ ଏବଂ ରହିଲା $x - \frac{x+1}{2}$

ଦ୍ୱିତୀୟ କ୍ରେତା : $\frac{1}{2}\left(x-\frac{x+1}{2}\right)+\frac{1}{2}=\frac{x+1}{2^2}=\frac{x+1}{4}$

ତୃତୀୟ କ୍ରେତା : $\frac{1}{2}\left(x-\frac{x+1}{2}-\frac{x+1}{4}\right)+\frac{1}{2}=\frac{x+1}{2^3}$

ଚତୁର୍ଥ କ୍ରେତା : $\frac{x+1}{2^4}$ ; ପଞ୍ଚମ କ୍ରେତା : $\frac{x+1}{2^5}$

ଷଷ୍ଠକ୍ରେତା $\frac{x+1}{2^6}$ ଏବଂ ସପ୍ତମ କ୍ରେତା ନେଲା $\frac{x+1}{2^7}$

ସାତଜଣ ଯାକ ନେଇଥିବା ସେଓ ସଂଖ୍ୟା ହେଲା :

$$\frac{x+1}{2}+\frac{x+1}{2^2}+\frac{x+1}{2^3}+\frac{x+1}{2^4}+\frac{x+1}{2^5}+\frac{x+1}{2^6}+\frac{x+1}{2^7}=x$$

$$\Rightarrow (x+1)\left\{\frac{1}{2}+\frac{1}{4}+\frac{1}{8}+\frac{1}{16}+\frac{1}{32}+\frac{1}{64}+\frac{1}{128}\right\}=x$$

$$\Rightarrow (x+1)\left\{\frac{64+32+16+8+4+2+1}{128}\right\}=x$$

$$\Rightarrow (x+1)\frac{127}{128}=x$$

$$\Rightarrow 128\,x=127(x-1)$$

$$\Rightarrow x=2^7-1=127$$

∴ ଦୋକାନୀ ପାଖରେ ମୋଟ 127 ଟି ସେଓ ଥିଲା ।

ଏଥିରୁ ଜଣାଯାଏ ଯେ ପ୍ରଥମରୁ ସପ୍ତମଯାଏ କ୍ରେତାମାନେ ଯଥାକ୍ରମେ

64, 32, 16, 8, 4, 2 ଓ 1 ଟି ସେଓ କିଣିଥିଲେ । ବାସ୍ତବରେ କୌଣସି କ୍ରେତା କଟା ବା ଫାଳିକିଆ ସେଓ କିଣି ନଥିଲେ ।

୪୨. କୁକୁଡ଼ାଙ୍କ ଖାଦ୍ୟ ।

ଏକତିରିଶଟି କୁକୁଡ଼ାଙ୍କ ପାଇଁ ଜଣପିଛା ସପ୍ତାହକୁ ଏକ ଲିଟର ଲେଖାଏଁ ହିସାବ ହୋଇ ଏକ ନିର୍ଦ୍ଦିଷ୍ଟ ସମୟ ପାଇଁ କିଛି ଖାଦ୍ୟ ଗଚ୍ଛିତ ଥିଲା । ମାତ୍ର ପ୍ରତି ସପ୍ତାହରେ ଗୋଟାଏ ଲେଖାଏଁ କୁକୁଡ଼ା କମିଯିବାରୁ ଗଚ୍ଛିତ ଖାଦ୍ୟ ନିର୍ଦ୍ଧାରିତ ସମୟର ଦୁଇଗୁଣ ସମୟରେ ସରିଲା । ପ୍ରଥମତଃ କେତେ ସମୟ ପାଇଁ ଖାଦ୍ୟ ଓ କେତେ ପରିମାଣର ଖାଦ୍ୟ ଗଚ୍ଛିତ ଥିଲା ?

ମନେକର ମୋଟ୍ $x$ ଲିଟର ଖାଦ୍ୟ $y$ ସପ୍ତାହ ପାଇଁ ଗଚ୍ଛିତ ଥିଲା ।

31 ଟି କୁକୁଡ଼ାର $y$ ସପ୍ତାହ ପାଇଁ ଖାଦ୍ୟ $= 31y$

$\therefore x = 31y$

ପ୍ରଥମ ସପ୍ତାହରେ 31 ଟି କୁକୁଡ଼ା ପାଇଁ 31 ଲିଟର ଖାଦ୍ୟ ଖର୍ଚ୍ଚ ହେବ । ପ୍ରତି ପରବର୍ତ୍ତୀ ସପ୍ତାହରେ ଗୋଟିଏ ଲେଖାଏଁ କୁକୁଡ଼ା କମିଯାଉଥିବାରୁ ଦ୍ୱିତୀୟ ସପ୍ତାହରେ 30 ଲିଟର, ତୃତୀୟ ସପ୍ତାହରେ 29 ଏଇଭଳି ନିର୍ଦ୍ଧାରିତ ସମୟର ଦୁଇଗୁଣ ସମୟ ପାଇଁ ଅର୍ଥାତ୍ $2y$ ସପ୍ତାହରେ ଶେଷ ସପ୍ତାହ ଯାଏ ଖର୍ଚ୍ଚ ହୋଇ ଚାଲିବ ।

ପ୍ରତି ସପ୍ତାହ ପିଛା ଖର୍ଚ୍ଚର ଧାରା ହେଲା :

ପ୍ରଥମ ସପ୍ତାହ 31 ଲି

ଦ୍ୱିତୀୟ ସପ୍ତାହ $31-2+1 = 30$ ଲିଟର

ତୃତୀୟ ସପ୍ତାହ 31-3+1 = 29 ଲିଟର

ଏବଂ ଶେଷରେ $2y$ ତମ ସପ୍ତାହରେ ଖର୍ଚ୍ଚ ହେବ $(31-2y+1)$ ଲିଟର

ସମୁଦାୟ ଗଚ୍ଛିତ ଖାଦ୍ୟ $x$ ଲିଟର ବା $31y$ ଲିଟର

$31y \Rightarrow 31+30+29 \ldots\ldots\ldots.(31-2y+1)$

$$\Rightarrow \left\{ \frac{31+(31-2y+1)}{2} \right\} \times 2y = (63-2y)y$$

$\Rightarrow 31y = (63-2y) \times y$

$\Rightarrow 63-2y = 31$ (କାରଣ $y \neq 0$ )

$\Rightarrow -2y = 31-63$

$\Rightarrow 2y = 32$

$\Rightarrow y = 16$

$x = 31y = 31 \times 16 = 496$

ଅର୍ଥାତ୍ 496 ଲିଟର ଖାଦ୍ୟ 16 ସପ୍ତାହ ପାଇଁ ଗଚ୍ଛିତ ଥିଲା ।

